# ଆଧାତ୍ମିକତା, ଆଧୁନିକ ଓଡ଼ିଆ କବିତା
# ଓ
# ଜନଜୀବନ ଉପରେ ଏହାର ପ୍ରଭାବ

## SPIRITUALISM, MODERN ORIYA LITERATURE AND IT'S IMPACT ON SOCIAL LIFE



ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗ ଆନୁକୂଲ୍ୟରେ
ଆୟୋଜିତ ରାଜ୍ୟସ୍ତରୀୟ ପାଠଚକ୍ର

# ସ୍ମରଣିକା

ଓଡ଼ିଆ ବିଭାଗ

**ନୀଳମଣି ମହାବିଦ୍ୟାଳୟ, ରୂପସା, ବାଲେଶ୍ୱର**

ତା ୨୪ ଓ ୨୫ ମାର୍ଚ୍ଚ, ୨୦୦୨

# ଆଧ୍ୟାତ୍ମିକତା, ଆଧୁନିକ ଓଡ଼ିଆ ସାହିତ୍ୟ
# ଓ
# ସମାଜ ଜୀବନରେ ଏହାର ପ୍ରଭାବ

ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗ ଆନୁକୂଲ୍ୟରେ ଆୟୋଜିତ
ରାଜ୍ୟସ୍ତରୀୟ ପାଠଚକ୍ରର

## ସ୍ମରଣିକା


ସଂପାଦକ ମଣ୍ଡଳୀ

ଡ଼ଃ. ଭାଗବତ ବେହେରା
ଡ଼ଃ. ମନ୍ମଥ କୁମାର ପ୍ରଧାନ
ଡ଼ଃ. ବଂଶୀଧର ଚୌଧୁରୀ
ଶ୍ରୀ କୁମୁଦ ଚନ୍ଦ୍ର ସାହୁ



ଓଡ଼ିଆ ବିଭାଗ
ନୀଳମଣି ମହାବିଦ୍ୟାଳୟ,ରୁପ୍‌ସା, ବାଲେଶ୍ୱର

ହେମନ୍ତ କୁମାର ପରିଡ଼ା
କୁଳ ସଚିବ, ଫକୀରମୋହନ ବିଶ୍ୱବିଦ୍ୟାଳୟ
ବ୍ୟାସବିହାର, ବାଲେଶ୍ୱର

ଆନନ୍ଦର କଥା ଯେ, ରୂପ୍‌ସାସ୍ଥିତ ନୀଳମଣି ମହାବିଦ୍ୟାଳୟର ଓଡ଼ିଆ ବିଭାଗ ଦ୍ୱାରା ଅନୁଷ୍ଠିତ "ଆଧ୍ୟାତ୍ମିକତା, ଆଧୁନିକ ଓଡ଼ିଆ ସାହିତ୍ୟ ଓ ସମାଜ ଜୀବନରେ ଏହାର ପ୍ରଭାବ" ଶୀର୍ଷକ ବିଷୟବସ୍ତୁ ଉପରେ ହୋଇଥିବା ଆଲୋଚନା ଚକ୍ରରେ ପଠିତ ପ୍ରବନ୍ଧଗୁଡ଼ିକୁ ଏକ ପୁସ୍ତକ ଆକାରରେ ପ୍ରକାଶିତ କରାଯାଉଛି । ଏହା ନିଶ୍ଚିତ ଭାବେ ଏକ ସାଧୁ ଉଦ୍ୟମ । ସମାଜକୁ ଉଚିତ୍ ମାର୍ଗ ଦେଖାଇବାରେ ଏହା ସାହାଯ୍ୟ କରିବ ବୋଲି ମୋର ଆଶା ।

ଏହାର ଉଦ୍ୟୋକ୍ତାମାନଙ୍କୁ ଅନେକ ଅନେକ ଧନ୍ୟବାଦ ।

(ହେମନ୍ତ କୁମାର ପରିଡ଼ା)

**ବିଜୟ କୁମାର ଦାସ**
ଅଧ୍ୟକ୍ଷ, ନୀଳମଣି ମହାବିଦ୍ୟାଳୟ
ରୁପ୍‌ସା, ବାଲେଶ୍ୱର

ରୁପ୍‌ସା
ତା ୨୫.୭.୨୦୦୨

ଜୀବନର ଗଭୀର ଅନୁଭୂତିରୁ ଜନ୍ମ ନିଏ ଆଧ୍ୟାତ୍ମିକ ଭାବନା । ଏହି ଆଧ୍ୟାତ୍ମିକ ଭାବନା ହିଁ ମାନବକୁ ମହାମାନବର ରୂପ ଦିଏ । ଭଗବତ୍ ଅନୁଚିନ୍ତା, ଭଗବାନଙ୍କ ପ୍ରତି ଯଥାଯଥ ସ୍ନେହ ଓ ଗଭୀର ପ୍ରେମ ହିଁ ଭଗବତ୍ ପ୍ରାପ୍ତିର ମାର୍ଗକୁ ସୁଗମ କରିଥାଏ । ଯୁଗେ ଯୁଗେ ସାଧୁ, ସନ୍ଥ, ମୁନି, ଋଷିମାନେ ହିଁ ସେମାନଙ୍କର ସାଧନା ଓ ଧର୍ମଗ୍ରନ୍ଥ ମାଧ୍ୟମରେ ଏହି ବାଣୀମାନ ମାନବ ସମାଜକୁ ଶୁଣାଇ ଯାଇଛନ୍ତି ।

ବହୁ ସୁଖ ଏବଂ ଆନନ୍ଦର କଥା, ଆମ ମହାବିଦ୍ୟାଳୟ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ତରଫରୁ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗଙ୍କ ସହାୟତାରେ, "ଆଧ୍ୟାତ୍ମିକତା, ଆଧୁନିକ ଓଡ଼ିଆ ସାହିତ୍ୟ ଓ ସମାଜ ଜୀବନରେ ଏହାର ପ୍ରଭାବ" ଶୀର୍ଷକ ରାଜ୍ୟସ୍ତରୀୟ ପାଠଚକ୍ର ୨୪.୩.୨୦୦୨ ଓ ୨୫.୩.୨୦୦୨ ଦୁଇଦିନ ଧରି ଅନୁଷ୍ଠିତ ହୋଇଯାଇଅଛି ଏବଂ ଏହି ପାଠଚକ୍ର ଉପରେ ସ୍ମରଣିକାଟିଏ ମଧ୍ୟ ପ୍ରକାଶ ପାଇବାକୁ ଯାଉଛି । ଏହି ସ୍ମରଣିକାଟି ଅଗଣିତ ପାଠକପାଠିକାଙ୍କ ନିକଟରେ ନିଶ୍ଚୟ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିବ ଏହି କାମନା କରି ରହୁଛି ।

(ବିଜୟ କୁମାର ଦାସ)

## ...ସମ୍ପାଦକୀୟ

"ରେ ଆତ୍ମନ୍ ନିଦ୍ରା ପରିହରି
ଫେଡ଼ି ଚିନ୍ତାର ଲୋଚନ, କର କର ନିରୀକ୍ଷଣ
ନିଃଶବ୍ଦେ ଜୀବନ ସ୍ରୋତ ଧାଉଁଛି କିପରି
ଭେଟିବାକୁ ମୃତ୍ୟୁ ସିନ୍ଧୁ କରାଳ ଲହରୀ ।।"
(ଭକ୍ତକବି ମଧୁସୂଦନ)

ଜୀବନର ଗତି ମୃତ୍ୟୁ ଆଡ଼କୁ ସର୍ବଦା ଧାବିତ । ଏହାଠାରୁ ବଳି ସତ୍ୟ ଆଉ କ'ଣ ଅଛି ? ଜୀବ ପ୍ରତି ଏହା ଏକ ବିରାଟ ଆହ୍ୱାନ । "ଜନ୍ମ-ମୃତ୍ୟୁ" ଏହା ଯଦି ଜୀବନର ସଂଜ୍ଞା, ତେବେ ସେ ଜୀବନର ମୂଲ୍ୟ କ'ଣ ? ଜୀବନର ମୂଲ୍ୟ ସେଇଠି ସାର୍ଥକ ହୁଏ, ଯଦି ସେ ଜୀବ ନିଜର ଗତିପଥକୁ ଭଗବତ୍ ମାର୍ଗରେ ଧାବିତ କରାଏ । ଈଶ୍ୱରଙ୍କ ସମ୍ପର୍କରେ ଜ୍ଞାନ ଅର୍ଜନ କରିବା, ଈଶ୍ୱରଙ୍କୁ ଚିନ୍ତା କରିବା, ଈଶ୍ୱରଙ୍କ ନିକଟରେ ନିଜକୁ ପୂର୍ଣ୍ଣ ସମର୍ପଣ କରି କାର୍ଯ୍ୟ କରିବା ହିଁ ଯଥାର୍ଥରେ ଭଗବତ୍ ପ୍ରୀତି ବା "ଆଧ୍ୟାତ୍ମିକତା" । ଜୀବନ ହେଉଛି ସ୍ୱର୍ଗୀୟ ଅବଦାନ । ଭଗବାନଙ୍କ ଅପାର କରୁଣାରୁ ଜୀବର ସୃଷ୍ଟି । ଜୀବ ମଧ୍ୟରେ ଶ୍ରେଷ୍ଠ ହେଉଛି ମନୁଷ୍ୟ । ସେ ହିଁ କେବଳ ସତ୍ୟ, ଧର୍ମ, ନ୍ୟାୟକୁ ଅନୁଭବ କରିପାରେ । ସେଥିପାଇଁ ବିଶ୍ୱପିତା ତା' ଉପରେ ଖୁସି ହୁଅନ୍ତି । କାରଣ ସେ ଦିବ୍ୟଜ୍ଞାନର ଅଧିକାରୀ। ତାହା ନକରି ସେ ଯଦି ଧନ, କ୍ଷମତା, ପ୍ରାଚୁର୍ଯ୍ୟ, କାମନା, ଭୋଗବିଳାସକୁ ନିଜର ସାଥୀ କରି ସମୟ ବିତାଇଦିଏ - ତେବେ ସେ ଜୀବନର ମୂଲ୍ୟ କିଛି ନ ଥାଏ । ସେ "ମନୁଷ୍ୟ", "ମନୁଷ୍ୟ" ହୋଇ ମଧ୍ୟ ପଶୁଠାରୁ ହୀନ ହୋଇଯାଏ । ସତ୍ୟ, ଶାନ୍ତି, ଦାନ, ଧର୍ମ, ସେବା,

ତପସ୍ୟାରୁ ଯେଉଁ ସୁଖ ମିଳେ ତା'ର କାଣିଚାଏକୁ ମଧ୍ୟ ଭୋଗବିଳାସର ସୁଖ ସରି ହୁଏନାହିଁ । ଭଗବତ୍ ଭାବନା, ଭଗବାନଙ୍କ ପ୍ରତି ଶ୍ରଦ୍ଧା, ଭଗବତ୍ କର୍ମରେ ସମୟ ବିତାଇବାରେ ଯେଉଁ ସୁଖ ମିଳେ ତାହା "ଦିବ୍ୟାନନ୍ଦ" ବା "ବ୍ରହ୍ମାନନ୍ଦ" ନାମରେ ନାମିତ । ତାହା ହିଁ "ଆଧ୍ୟାତ୍ମିକତା" ବା ଈଶ୍ୱର ଅନୁଚିନ୍ତା ।

ପ୍ରାଚୀନ ଭାରତୀୟ ମୁନି, ଋଷି, ସାଧୁସନ୍ଥମାନେ ଭଗବତ୍ ପ୍ରାପ୍ତି ନିମିତ୍ତ ନାନା ମାର୍ଗ ଦର୍ଶାଇ ଯାଇଛନ୍ତି । ତାଙ୍କର ସେହି ଦିବ୍ୟବାଣୀ ଆମର ଗ୍ରନ୍ଥମାନଙ୍କରେ ଲିପିବଦ୍ଧ ହୋଇ ହଜାର ହଜାର ବର୍ଷ ଧରି ମାନବ ସମାଜକୁ ଆଧ୍ୟାତ୍ମ ଜ୍ଞାନ ବିତରଣ କରି ଆସୁଛି । ଆଜିର ଯନ୍ତ୍ରସଭ୍ୟତାପୁଷ୍ଟ ଅଘୋରୀ ମାନବ ନିକଟରେ ସେ ମହତ୍‌ବାଣୀର କୌଣସି ମୂଲ୍ୟ ନଥିଲେ ମଧ୍ୟ - ଏ ସମାଜରୁ ବେଦ, ବେଦାନ୍ତ, ଗୀତା, ସଂହିତା, ଉପନିଷଦ, ରାମାୟଣ, ଭାଗବତର ମୂଲ୍ୟ କମିଯାଇ ନାହିଁ । ଆଜି ପରମାଣୁ ଶକ୍ତିର ଅଧିକାରୀ ମନୁଷ୍ୟ ସର୍ବଦା ମୃତ୍ୟୁର ସ୍ୱପ୍ନ ଦେଖୁଥିଲେ ମଧ୍ୟ, ଭକ୍ତ, କବି, ଦାର୍ଶନିକ ସେମାନଙ୍କର କାବ୍ୟ, କବିତା, ଦର୍ଶନରେ ଆଧ୍ୟାତ୍ମିକ ଜ୍ଞାନର ଅବତାରଣା କରିବାକୁ ଭୁଲୁନାହାନ୍ତି । ନିଜର ମୃତ୍ୟୁକୁ ନିଜେ ଆହ୍ୱାନ କରି ଆଣୁଥିବା ଏକବିଂଶ ଶତାବ୍ଦୀର ମନୁଷ୍ୟ ପ୍ରତି ମୃତ୍ୟୁ ସର୍ବଦା ଏକ ଆହ୍ୱାନ ହୋଇଥିବା ବେଳେ, ଆଧ୍ୟାତ୍ମ ମାର୍ଗରେ ଯାତ୍ରା, ଭଗବାନଙ୍କ ପ୍ରତି ବିଶ୍ୱାସ, ଏହି ବିପଥଗାମୀ ମନୁଷ୍ୟକୁ ଯେ ମୃତ୍ୟୁମୁଖରୁ ଟାଣି ଆଣି ଅମୃତର ସ୍ୱାଦ ଚଖାଇ ପାରିବ - ତାହାକୁ ଆଜିର ସାହିତ୍ୟିକମାନେ ତାଙ୍କର କାବ୍ୟ, କବିତା, ନାଟକ, ଉପନ୍ୟାସର ମୂଳମନ୍ତ୍ର ବୋଲି ଘୋଷଣା କରି ଚାଲିଛନ୍ତି । ଏ ସମସ୍ତ ସୃଷ୍ଟି ଯେ ଆଜିର ଅବକ୍ଷୟମୁଖୀ ମାନବ ସମାଜକୁ ଧ୍ୱଂସ ମୁଖରୁ ରକ୍ଷା କରିପାରିବ - ଏହା ହିଁ ନିଃସନ୍ଦେହ ॥

# ସୂଚୀପତ୍ର

# ସାଂପ୍ରତିକ ଓଡ଼ିଆ କବିତାରେ ଆଧ୍ୟାତ୍ମିକ ଚେତନା

☆ ପ୍ରଫେସର ପଠାଣୀ ପଟ୍ଟନାୟକ

**ସାଂ**ପ୍ରତିକ ଓଡ଼ିଆ କବିତାରେ ଆଧ୍ୟାତ୍ମିକ ଚେତନା ସଂପର୍କରେ ଆଲୋଚନା କାହିଁକି ? ତା'ର କାରଣ ହେଲା , ଭାରତୀୟ ସମାଜ ଜୀବନରେ ଆଧ୍ୟାତ୍ମିକ ଚେତନାର ପରମ୍ପରା ସୁପ୍ରତିଷ୍ଠିତ । ସଭ୍ୟତାର କେଉଁ ଆଦିମ ଯୁଗରୁ ଏହି ସମାଜରେ ଆଧ୍ୟାତ୍ମିକ ଭାବନା ଅସ୍ଥି ମଜ୍ଜାଗତ ହୋଇ ଆସିଅଛି । ଧର୍ମାନୁଷ୍ଠାନ ବ୍ୟତୀତ ଭାରତୀୟ ସମାଜକୁ କଳ୍ପନା କରାଯାଇପାରେ ନାହିଁ । ସେଥିପାଇଁ ଯୁଗେ ଯୁଗେ ଭାରତବର୍ଷ ଯେତେ ସନ୍ଥ, ପୟଗମ୍ବର ଏବଂ ମହାତ୍ମାମାନଙ୍କୁ ସ୍ୱାଗତ ଜଣାଇ ଆପଣାର କରିପାରିଅଛି, ପୃଥିବୀର ଅନ୍ୟ ଦେଶରେ ତାହା ସେହି ଅନୁପାତରେ ସ୍ୱଳ୍ପପ୍ରାୟ କହିଲେ ଚଳିବ ।

ସାହିତ୍ୟରେ ଯୁଗଧର୍ମର ନାନା ପରୀକ୍ଷା ନିରୀକ୍ଷା ଏବଂ ସାମୟିକ ପଦଧ୍ୱନି ସତ୍ତ୍ୱେ ସ୍ୱାଧୀନତାର ପ୍ରାକ୍‌କାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଏହି ଆଧ୍ୟାତ୍ମିକ ଚେତନାର ଭାବଧାରା ଅତୁଟ ରହି ଆସିଥିଲା । ସ୍ୱାଧୀନତା ଆନ୍ଦୋଳନକାଳୀନ କୌଣସି ପ୍ରତିକ୍ରିୟା ଅଥବା ପାଶ୍ଚାତ୍ୟ ସଭ୍ୟତା ପ୍ରଭାବିତ କୌଣସି ଭାବଧାରା ଏହି ପାରମ୍ପାରିକ ବିଶ୍ୱାସରୁ ସମାଜକୁ ମୁକ୍ତ କରିପାରିନଥିଲା । ମାତ୍ର ସ୍ୱାଧୀନତା ପରେ ହଠାତ୍ ଦେଖାଗଲା, ଏକ ଅଭାବନୀୟ ପରିବର୍ତ୍ତନ ହେବାକୁ ଯାଉଛି । ଏହି ଦେଶର କୃଷିଭିତ୍ତିକ ସମାଜ ଜୀବନରେ ଶିଳ୍ପ ସଭ୍ୟତା ଗଭୀର ଆଲୋଡ଼ନ ସୃଷ୍ଟି କରିବାରେ ଲାଗିଛି । ଯାନ୍ତ୍ରିକ ସଭ୍ୟତାର ପ୍ରତିକ୍ରିୟା ଜନମାନସରେ ଏପରି କେତେକ ଭାବଧାରା ପ୍ରତିଫଳନ ହେବାରେ ଲାଗିଛି, ଯହିଁରେ ମନ ହେଉଛି, ସତେ ଯେପରି ଅତୀତ ସହିତ ଆମର ସଂପର୍କ ବିଚ୍ଛିନ୍ନ ହୋଇ ପଡୁଛି । ପାଶ୍ଚାତ୍ୟ ଜଗତରେ ଯେତେବେଳେ ଶିଳ୍ପ ବିପ୍ଳବ ଆରମ୍ଭ ହେଲା, ଯାନ୍ତ୍ରିକ ସଭ୍ୟତାର ପ୍ରଭାବରେ ସାମାଜିକ ଜୀବନରେ ବୈପ୍ଳବିକ ପରିବର୍ତ୍ତନ ସମ୍ଭବ ହୋଇ ପଡ଼ିଲା, ସେତେବେଳେ ସେ ଦେଶର ସାହିତ୍ୟ ସଂପୂର୍ଣ୍ଣ ଭାବରେ ସେହି ଜଡ଼ବାଦୀ ସମାଜ-ବ୍ୟବସ୍ଥାକୁ ଆଦରି ନେଲା ଏବଂ ତାହାରି ଦର୍ଶନର ଅଭିବ୍ୟକ୍ତି ମାଧ୍ୟମରେ ନିଜର ସ୍ଥିତାବସ୍ଥା ଜାହିର କରିବାକୁ କୁଣ୍ଠିତ ହେଲା ନାହିଁ । ମାତ୍ର ଭାରତୀୟ ସମାଜରେ ଶିଳ୍ପ ବିପ୍ଳବର ଅୟମାରମ୍ଭ ସତ୍ତ୍ୱେ ସାମାଜିକ ମନୋଭାବ ସେହି ଅନୁପାତରେ ଜଡ଼ବାଦୀ ହୋଇପାରିନାହିଁ । ସେହି ଅନୁରୋଧରେ

ସାହିତ୍ୟ ମଧ୍ୟ ପ୍ରାଚୀନ ଆଧ୍ୟାତ୍ମିକ ପ୍ରେରଣାରୁ ନିଜକୁ ମୁକ୍ତି ଦେବା ସମ୍ଭବ ହୋଇ ନାହିଁ । ଏହା ସତ୍ୟ ଯେ, ଆଧୁନିକ ପ୍ରଗତିଶୀଳ ଶିଳ୍ପ ଭିତ୍ତିକ ସମାଜରେ ସାମାଜିକ ପରିବର୍ତ୍ତନ ଏପରି କ୍ଷିପ୍ର ଭାବରେ ସମ୍ଭବ ହୋଇ ପାରିଛି ଯେ, ମନୁଷ୍ୟ ନିଜର ଶକ୍ତି ଉପରେ ଅଧିକ ଆସ୍ଥାବାନ ହେବାକୁ ଶିକ୍ଷାଲାଭ କରିଅଛି । ସେ ହୁଏତ ପ୍ରାଚୀନ ସମାଜ ପରି ଜଣେ ଭଗବାନଙ୍କୁ ଆଶ୍ରା କରିବା ପାଇଁ ପ୍ରସ୍ତୁତ ନୁହେଁ । ପ୍ରତ୍ୟେକ ପଦାର୍ଥର ଅନ୍ତରାଳରେ ସେକୌଣସି ଭଗବାନଙ୍କର ଅଦୃଶ୍ୟ ହସ୍ତର କରଣି ଅଛି ବୋଲି ବିଶ୍ୱାସ ନ କରି ଏକ ବୈଜ୍ଞାନିକ କାରଣ ଖୋଜିବା ପାଇଁ ଉଦ୍ୟମ କରୁଅଛି ।

ଏହା ସତ୍ୟ ଯେ, ଆଧୁନିକ ମନୁଷ୍ୟ ପୁରାପୁରି ଈଶ୍ୱରଙ୍କ ଉପରେ ନିର୍ଭରଶୀଳ ହେବାକୁ ଶିଖିନାହିଁ । ତା'ର ଆଖି ଆଗରେ ପ୍ରାଚୀନର ବହୁ ଅନୁଷ୍ଠାନ ଏବଂ ବିଶ୍ୱାସ ଭୁଷୁଡ଼ି ପଡ଼ିଛି, ଠିକ୍ ତାସ୍‌ର ଘର ପରି । ମାତ୍ର କେତୋଟି ଦଶନ୍ଧି ମଧ୍ୟରେ ଆଜି ଯେଉଁ ପରିବର୍ତ୍ତନ ସମାଜରେ ଏବଂ ଚିନ୍ତା ରାଜ୍ୟରେ ସଂଘଟିତ ହୋଇଯାଉଛି, ବହୁ ଶତାବ୍ଦୀ ମଧ୍ୟରେ ସୁଦ୍ଧା ତାହା ମନୁଷ୍ୟ କଳ୍ପନା କରିପାରୁନଥିଲା । ତେବେ, ଆମେ ସଫଳତାର ସହିତ 'ଭଗବାନ' ରୂପୀ ଭାବନାଟିକୁ ମନରୁ ପୋଛି ଫୋପାଡ଼ି ଦେଇ ପାରିଛେ କି ? ସାମ୍ୟବାଦୀ ଆଦର୍ଶର ଆର୍ତ୍ତନାଦ ଏବଂ ଜଡ଼ବାଦୀ ସଂସ୍କୃତିର ଉଦ୍‌ବୋଧନ ସତ୍ତ୍ୱେ ଆଧୁନିକ ମନୁଷ୍ୟ ମନରେ କିପରି ଏକ ଖାଲି ଭାବ ରାଜପଣ କରୁଛି । ସେ ହୁଏତ ଏକ ପ୍ରବଣତାର ଅନୁରୋଧରେ 'ଈଶ୍ୱର ସେ ବିଶ୍ୱର କେ' ? କି ଯାଏ ଆସେ ତାହାରି ସାଥେ ? ବୋଲି ପ୍ରଶ୍ନ କରି ନିଜର ବୈପ୍ଳବିକ ମନର ପରଚୟ ଦେଇଛି ସିନା, କିନ୍ତୁ ବଡ଼ ବିକଳ ହୋଇ ଖୋଜି ବୁଲୁଛି ଆଉ ଏକ ଆଶ୍ରୟ, ଆଉ ଏକ ପ୍ରେରଣା ଓ ଭରସାର କ୍ଷେତ୍ର । କାରଣ ଏତେ ପରିବର୍ତ୍ତନ ଓ ବିବର୍ତ୍ତନ ସତ୍ତ୍ୱେ ଆମେ କ'ଣ ଆମର ପୁରୁଣା ଦର୍ଶନ,ପୁରାଣ ଓ ଚଳଣିକୁ ବାଦ ଦେଇ ପାରିଲେଣି ? ଅତୀତର ସମାଜ ହୁଏତ ବିଶ୍ୱାସରେ କିମ୍ୱା ଅନ୍ଧତାରେ ବଶବର୍ତ୍ତୀ ହୋଇ ଭଗବାନ ରୂପୀ ଅନୁଷ୍ଠାନ ଉପରେ ନିର୍ଭରଶୀଳ ଥିଲା କିନ୍ତୁ ଗୋଟାଏ ଅନୁଷ୍ଠାନକୁ ବାଦ ଦେଇ ତା'ର ମନ ଆଜି ଅତ୍ୟନ୍ତ ବିକଳ ହୋଇ ଖୋଜୁଛି ଆଉ ଏକ ଆଶ୍ରା ଓ ଭରସାର ସ୍ଥଳ । ତା'ର ମନର ଏହି ଦୋଳାୟମାନ ପ୍ରତିକ୍ରିୟା ସଂପର୍କରେ ଆଧୁନିକ କବିତା ବାରମ୍ୱାର ବଜ୍ର ନିର୍ଘୋଷ ସ୍ୱରରେ ଆହ୍ୱାନ ଦେଉଅଛି ।

ଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ପୃଥିବୀରେ ଦୁଇଟି ବିଶ୍ୱଯୁଦ୍ଧ ହୋଇଗଲା । ଅତୀତର ଇତିହାସରେ ବହୁ ସମରର କାହାଣୀ ଲିପିବଦ୍ଧ ହୋଇଥିଲେ ହେଁ ବିଗତ ଦୁଇଟି

ବିଶ୍ୱଯୁଦ୍ଧର ବିଭୀଷିକା କଳ୍ପନାତୀତ । ମାନବ ସମାଜକୁ ଅକ୍ଳେଶରେ ଧ୍ୱଂସ କରିଦେବା ପାଇଁ ବିଜ୍ଞାନ ଯୁଗର ମନୁଷ୍ୟ ଆଜି ଅମିତ ଶକ୍ତିଶାଳୀ । ଯେଉଁ ସଂସ୍କୃତିର ବିକାଶ ପାଇଁ ହଜାର ହଜାର ବର୍ଷ ଅପେକ୍ଷା କରିବାକୁ ପଡ଼ିଅଛି, ତାହାକୁ ଅବଲୀଳାକ୍ରମେ ଆଜି ଧରାପୃଷ୍ଠର ଲୋପ କରି ଦିଆଯାଇପାରେ । ଯୁଦ୍ଧଜନୀତ ଧ୍ୱଂସଲୀଳା, ହିଂସା. ନିର୍ମମ ନିଷ୍ଠୁର ଆଚରଣ ଆଜି ରାକ୍ଷସ ପରି ବିଭୀଷିକା ସୃଷ୍ଟି କରି ସାଂପ୍ରତିକ ସମାଜକୁ ଧ୍ୱଂସ କରିଦେବାକୁ ମାଡ଼ି ଆସୁଅଛି । ଦେଶ ଦେଶ ମଧ୍ୟରେ ଜଡ଼ସଭ୍ୟତା ଓ ଐଶର୍ଯ୍ୟର ସମୃଦ୍ଧି ପାଇଁ ଏପରି ପ୍ରତିଯୋଗିତା ଲାଗି ରହିଅଛି ଯେ, ସଭ୍ୟ ମନୁଷ୍ୟ ପାଗଳ ନହେଲେ ହେଲା !!

ଆଜି ସମସ୍ତେ ଏକ ସନ୍ଦେହର କୁହୁଳି ମଧ୍ୟରେ ଅବସ୍ଥାନ କରୁଛନ୍ତି । ଚତୁର୍ଦ୍ଦିଗରେ ହତାଶା ଓ ଗ୍ଲାନି, ସମ୍ଭୋଗବିଳାସ ଓ ମତାନ୍ଧତା । ନୈତିକ ମନୁଷ୍ୟର ପରାଜୟ ମାନବ ସମାଜକୁ ଅତ୍ୟନ୍ତ ବିହ୍ୱଳ ଅବସ୍ଥାରେ ପକାଇ ଦେଇଅଛି । Dr Poul Brunton ତାଙ୍କ ଲିଖିତ "The Spiritual crisis of man" ପୁସ୍ତକରେ ମାନବ ସମାଜର ଏହିଅସହାୟ ଅବସ୍ଥାକୁ ଅତ୍ୟନ୍ତ ଚମତ୍କାର ଭାବରେ ବିଶ୍ଳେଷଣ କରିଛନ୍ତି । ଦ୍ୱିତୀୟ ମହାଯୁଦ୍ଧକାଳୀନ ପୃଥିବୀର ଦୂରାବସ୍ଥାକୁ ବିଶ୍ଳେଷଣ କରି ସେ ଉଦ୍ଧାର କରିଛନ୍ତି ବିଶିଷ୍ଟ ଇଂରେଜୀ ଔପନ୍ୟାସିକା Virginia Woolf ଙ୍କର ଏକ ବକ୍ତବ୍ୟ-

"I have the feeling that I shall go mad and cannot go on any longer in these terrible times"

ପରମାଣୁ ଯୁଦ୍ଧର ଭୟାବହତାରେ ଏ ଯୁଗର ମନୁଷ୍ୟ ବିଚଳିତ ଓ ବିଭ୍ରାନ୍ତ । ପଲ୍ ବ୍ରଣ୍ଟନଙ୍କ ମତରେ ଆମେ ଭଗବାନଙ୍କୁ ଭୁଲି ଜଡ଼-ସଭ୍ୟତାର ଆରାଧନା କରି ବହୁ ଦୁଃଖ ନିମନ୍ତ୍ରଣ କରି ଆଣିଛେ । ବିଜ୍ଞାନର ଅଭାବନୀୟ ଉଦ୍ଭାବନ ଏବଂ ଆବିଷ୍କାର ଯୋଗୁଁ ବସ୍ତୁ ସଂପର୍କରେ ଆମର ଜ୍ଞାନ ଆଜି ସୁଦୂର ପ୍ରସାରୀ ସତ୍ୟ, ନିଜକୁ ଭୁଲି, ଅବହେଳା କରି ପାଗଳ ପରି ଏବଂ ବସ୍ତୁବାଦୀ ସଂସ୍କୃତିକୁ ଆଲିଙ୍ଗନ କରିବା ପାଇଁ ସମସ୍ତେ ବ୍ୟାକୁଳ ହୋଇ ପଡ଼ିଛନ୍ତି । ଅଥଚ ମନୁଷ୍ୟ ନିଜେ କାହିଁକି ଦୁଃଖୀ ହାହୁତାଶ ଓ ଗ୍ଲାନିରେ ପିଷ୍ଟ ହୋଇ ଭାଙ୍ଗି ପଡୁଛି, ସେ ସଂପର୍କରେ ସେ ଆଦୌ ସଚେତନ ନୁହେଁ । ତେଣୁ ପଲ୍ ବ୍ରଣ୍ଟନ ଅତ୍ୟନ୍ତ ବିହ୍ୱଳ ହୋଇ କହିଛନ୍ତି ।

"Science has gone out and investigated the universe in every direction except one - the Scientist himself."

ସେହି କାରଣରୁ ଆଧୁନିକ କବିତାରେ ଏ ଯୁଗର ସାମାଜିକ ଅଶାନ୍ତି, ହାହୁତାଶ ଏବଂ ନୈତିକ ଭାବନାର ଅପମୃତ୍ୟୁ ଜନିତ ପ୍ରତିକ୍ରିୟା · ଇତ୍ୟାଦି ଅତ୍ୟନ୍ତ ଚମତ୍କାର ଭାବରେ ପ୍ରତିଫଳିତ । ଏ ଯୁଗରେ କବି ଯଦିଓ ଭଗବାନଙ୍କର ଅନ୍ଧ ସ୍ତାବକ ନୁହେଁ, କୌଣସି ଧର୍ମମତବାଦର ପ୍ରଚାରକ ହେବାକୁ ଚାହେଁ ନାହିଁ, ସେ କିନ୍ତୁ ସଂପୂର୍ଣ୍ଣ ଭାବରେ ସଚେତନ ଯେ ଆଧ୍ୟାତ୍ମିକ ଭାବନା-ବିହୀନ ଜୀବନ ଅତ୍ୟନ୍ତ କ୍ଳାନ୍ତି, ବିଚଳିତ ଏବଂ ବହୁ ଭାବରେ ବିଦଳିତ ମଧ୍ୟ । ପାଶ୍ଚାତ୍ୟ କବି ହପ୍‌କିନ୍‌ସ ଆଧୁନିକ ଯୁଗର ଏହି ବିକଳ ଅବସ୍ଥାକୁ ଲକ୍ଷ୍ୟ କରି ଅତ୍ୟନ୍ତ ବିଚଳିତ ହୋଇ କହିଛନ୍ତି ତାଙ୍କର ଗୋଟିଏ ସନେଟ୍‌ରେ -

" Generation have trode, have trode,have trode;
and all is seared with trade;bleared, smeared with toil;
And wears man's smudge and shares man's smell;
the Soil,
Is bare now, nor can foot fell being shod."

ଆଧୁନିକ କବି ତେଣୁ ମନୁଷ୍ୟର ଚିନ୍ତାରାଜ୍ୟରେ ସେହି ଆଧ୍ୟାତ୍ମିକ ଭାବନାର ଅଭାବବୋଧକୁ ଅନ୍ୱେଷଣ କରିବା ପାଇଁ ବାଧ୍ୟ । କାରଣ ମନୁଷ୍ୟ ବ୍ୟତୀତ ଆଉ କ'ଣ କେଣସି ପ୍ରାଣୀ ଭଗବାନଙ୍କୁ ଖୋଜି ପାଇଛି କି ? ଆଉ କ'ଣ କେହି ପ୍ରାଣୀ ନୈତିକତାର ଭାବାବେଗରେ ଆଲୋଡ଼ିତ ହୋଇ ପାରିବ କି ? ଏ ଯୁଗର ଜଣେ ମହାନ କବି ଗୁରୁ ଟି.ଏସ୍. · ଇଲିୟଟ୍ ସେହି ଅନ୍ୱେଷାର ବାଣୀ ଶୁଣାଇଛନ୍ତି-

"I am tired with my own life and the
lives of those after me,
I am dying in my own death and
the deaths of there after me."

ବିଜ୍ଞାନର ଅଗ୍ରଗତି ଫଳରେ ଧର୍ମ ଭାବନା ପ୍ରତି ଅନାସ୍ଥାଭାବ ·ଘୋଷିତ ହେଲା । ଆଜି ବିଜ୍ଞାନ ପାଖରେ ଅଲଭ୍ୟ କିଛି ନାହିଁ । ସେ ଅନନ୍ତ ଅନ୍ତରୀକ୍ଷରେ କୁଳାୟ ରଚନା ପାଇଁ ସାହାଯ୍ୟ କରିଛିତ ଅଗମ୍ୟ ମହାସମୁଦ୍ର ମଧ୍ୟରେ ଅବଲୀଳାକ୍ରମେ ପ୍ରବେଶ କରି ରତ୍ନ ଆହରଣ କରିବା ପାଇଁ ସୁଯୋଗ ପ୍ରଦାନ କରିଅଛି । ଆଧୁନିକ ମନୁଷ୍ୟ ନିକଟରେ ପ୍ରକୃତି ଆଜି ପୋଷା ମନାଇ ବସିଛି । ତାହା ପାଇଁ ଆଜି କିଛି ଅନୁପଲଭ୍ୟ କିମ୍ବା ଅନତିକ୍ରମ୍ୟ ନୁହେଁ । ଜୀବନ ଆଜି ଅତ୍ୟନ୍ତ ଅର୍ଥକାରୀ ଏବଂ

ସମ୍ଭୋଗ ବିଳାସରେ ପରିପୂର୍ଣ୍ଣ । ଅର୍ଥପ୍ରାପ୍ତି ଏବଂ କ୍ଷମତାଲିପ୍‌ସା ପାଇଁ ଆଧୁନିକ କାଳର ମନୁଷ୍ୟ ସମାଜ ଯେକୌଣସି ମାରାତ୍ମକ ଧ୍ୱଂସଲୀଳା କରିବା ପାଇଁ ଆଦୌ କୁଣ୍ଠିତ ନୁହେଁ, ତେଣୁ ସେ ଆଜି ନିଜର ଅସ୍ତ୍ରରେ ନିଜେ ଜର୍ଜରିତ ହେବାରେ ଲାଗିଛି । ଏହି ବିକଳତା ଓ ଗ୍ଳାନିର ଚିତ୍ର ଜଣେ ଆଧୁନିକ ଓଡ଼ିଆ କବିଙ୍କ ଲେଖନୀରେ ଏହିପରି -

"ତଥାପି ମୁଁ ଅନ୍ଧ ହେଲି ଇଏ କେଉଁ ଆଲୋକ ଜ୍ୱାଳାରେ ।
ଅନେକ ରଙ୍ଗର ବର୍ଣ୍ଣେ ! ମେଂଚା ମେଂଚା ବିଚିତ୍ର ପୀଡ଼ାରେ ।
(ଯେ ପୂର୍ବ ଅନନୁଭୂତ) ସଚକିତେ ନିଜେଇ ବିହ୍ୱଳି
ଅଦ୍ଭୁତ ବେଦନାନନ୍ଦେ, ମଗ୍ନତାରେ, ନିଜ ଭାବେ ନିଜେ ପୋଡ଼ି ଜଳି ।
ବୋଧହୁଏ ହଜିଗଲେ ଆଲୋକର ନିରନ୍ତ ବ୍ୟାପ୍ତିରେ
ନିଜକୁ ହାରିଲି ନିଜେ ଇଏ ଯେଉଁ ଅଭିଭୂତ ନିର୍ବାକ ଦ୍ୟୁତିରେ ।''

(ଦୁଇଟି ଆଖିର ସୂର୍ଯ୍ୟାବର୍ତ୍ତ -ବେଣୁଧର ରାଉତ)

ସମାଜର ଏହି ଅସହାୟ ଭାବନାର ଚିତ୍ର ଆଉ ଜଣେ ଆଧୁନିକ କବିଙ୍କର ଭାବନାରେ ଏହିପରି ରୂପାୟିତ ହୋଇଅଛି -

'କୋଟି ମାନବର ଶତ ସୁଖ ସ୍ୱପ୍ନ କାହିଁ
ହଜିଯାଏ ମରଣର ଚିର ଅଭିସାରେ
ମରୁଡ଼ିର ବିଷାକ୍ତ ନିଃଶ୍ୱାସେ
ଜାଳିଦିଏ ଶତାବ୍ଦୀର ସୁନାର ଫସଲ
ଟିକ୍ ଟିକ୍ କରେ ତଳେ.......
ସଂଖ୍ୟାହୀନ,ପଚମାନ ଧୂସରିତ ଶବ
ଆଉ ତା'ର ଶୁଭ୍ର ଅସ୍ଥି, ମଜ୍ଜା ମାଂସ
ବିରାଟ ବିଦ୍ରୂପ ।

(ତୀର୍ଯ୍ୟକ - ଜାନକୀ ବଲ୍ଲଭ ମହାନ୍ତି)

ଜଣେ ମହାନ ଚିନ୍ତା ନାୟକ ଯଥାର୍ଥରେ କହିଥିଲେ - " If you would understand an authour, you must understand his age".

-Goethe

ଅବିଶ୍ୱାସର ଧୂମ୍ର କୁଣ୍ଡଳି ମଧ୍ୟରେ ଶ୍ୱାସରୁଦ୍ଧ ମନୁଷ୍ୟ ଆଜି ନିଜର ମାନସିକ ଭାରସାମ୍ୟ ହରାଇ ବସିଅଛି । ଜଡ଼ସଭ୍ୟତାର ଅଭିବୃଦ୍ଧି ଓ ସମ୍ଭୋଗ ବିଳାସ ମଧ୍ୟରେ

ସେ ଆଜି ଏକ ପ୍ରକାର ଉଦ୍‌ଭ୍ରାନ୍ତ । ତା'ର ମନ ଆଜି ଅତ୍ୟନ୍ତ ଅଶାନ୍ତ ଏବଂ ଉଦ୍‌ବେଳିତ । ସ୍ନେହ, ପ୍ରୀତି, ସମବେଦନା ଏବଂ ମାନବିକତା ଠାରୁ ସେ ଆଜି ଶତ ଯୋଜନା ଦୂରରେ । ତେଣୁ ସେ ଆଜି ବ୍ୟାକୁଳ ହୋଇ ଖୋଜି ବୁଲୁଛି ଏକ ନିର୍ଭରତା, ଏକ ଆଶ୍ରୟ । ଏହା ଆଧ୍ୟାତ୍ମିକ ବ୍ୟାକୁଳତା ବ୍ୟତୀତ ଆଉ କ'ଣ ହୋଇପାରେ ?

ଏ ଯୁଗର କବି ଗୁରୁ ଏହିପରି ଦୋଳାୟମାନ ଅବସ୍ଥାରେ ଥାଇ ଶାନ୍ତି ପାଇଁ ବ୍ୟାକୁଳ ହୋଇଛନ୍ତି। ଅନ୍ୱେଷଣ କରିଛନ୍ତି ଆଧାତ୍ମିକତାର ଆହ୍ୱାନ ।

"ମାର୍ଗେଟ ବାଲିରେ
ଦୁଇଟି ଜିନିଷ ଯା'ର ମୂଲ୍ୟ କିଛି ନାହିଁ
ତାକୁ ମୁହିଁ ଯୋଡ଼ି ଦେଇପାରେ
ମଇଳା ହାତର ଭଂଗା ଆଙ୍ଗୁଠିର ନଖ
ମୋ ଦେଶର ନିରୀହ ଜନତା
କିଛି ଚାହେଁ ନାହିଁ
ଲାଲ ।
କାର୍ଥେଜକୁ ଯାଇ ତାହା ପରେ ଫେରି ମୁଁ ଆସିଲି ।
ଜଳିଯାଏ ଜଳିଯାଏ ଜଳି ପୋଡ଼ିଯାଏ
ପ୍ରଭୁ ମୋତେ କରହେ ଉଦ୍ଧାର
ହେ ପ୍ରଭୁ ଉଦ୍ଧାର କର
ଜଳି ପୋଡ଼ିଯାଏ ।" (ଟି.ଏସ୍.ଏଲିୟଟ୍. ଅନୁବାଦ -ଜ୍ଞାନୀନ୍ଦ୍ର ବର୍ମା)

ଆଧୁନିକ କାଳରେ ନୂତନ ଓ ପୁରାତନର ସଂଘର୍ଷ ଅବିରତ ଲାଗି ରହିଛି । ପ୍ରାଚୀନ ମୂଲ୍ୟବୋଧ ଆଉ ଗ୍ରାହ୍ୟ ହେଉନାହିଁ । ସାଂପ୍ରତିକ ଚଳଣୀଏବଂ ଚେତନା ତେଣୁ ଅନେକ ପରିମାଣରେ ଅସହ୍ୟ ହୋଇ ପଡୁଛି । ଯୁଗର ଯନ୍ତଣା ହିଁ ହୋଇଛି ଆଧୁନିକ ସାହିତ୍ୟ ଚେତନାର ବାହକ । ଆଧୁନିକ କ୍ଷୟିଷ୍ଣୁ ସଭ୍ୟତା ଏ ଯୁଗର କବି ମାନଙ୍କୁ ଯଥେଷ୍ଟ ପୀଡ଼ା ଦେବାରେ ଲାଗିଛି । ସୁଖର କଥା ଯେ, ଆଧୁନିକ କାଳର ଓଡ଼ିଆ କବିମାନେ ପ୍ରେରଣା ପାଇଁ କେବଳ ପାଶ୍ଚାତ୍ୟ ସାହିତ୍ୟକୁ ଅନୁସନ୍ଧାନ କରୁନାହାଁନ୍ତି, ସେମାନେ ଏ ଦେଶର ପାରମ୍ପରିକ ସଂସ୍କୃତିର ରହସ୍ୟ ଉଦ୍‌ଘାଟନ କରି ତାହାର ମୂଲ୍ୟବୋଧକୁ ମଧ୍ୟ ଆବଶ୍ୟକତା ଅନୁଯାୟୀ ସ୍ୱୀକାର କରୁଛନ୍ତି । ତେଣୁ ପଚମାନ ଯୁଗଧର୍ମକୁ ଲକ୍ଷ୍ୟ କରି ସେମାନେ ମଣିଷ ପାଇଁ ବିକଳ ହୋଇ ବିଦ୍ରୋହ

ଘୋଷଣା କରୁଥିଲା ବେଳେ ସମାଧାନ ପାଇଁ ଈଶ୍ୱର ସତ୍ତାକୁ ମଧ୍ୟ ଖୋଜି ବୁଲୁଛନ୍ତି । ତେଣୁ ସେମାନଙ୍କ କବିତାରେ ଆଧ୍ୟାତ୍ମିକତାର ପ୍ରତିଫଳନ ଅନିବାର୍ଯ୍ୟ ହୋଇ ପଡ଼ିଅଛି । ସାଂପ୍ରତିକ ଓଡ଼ିଆ ସାହିତ୍ୟ ସଂପର୍କରେ ଅନୁଶୀଳନ କରି ସ୍ୱନାମଧନ୍ୟ ଅଧ୍ୟାପକ ବିଧୂଭୂଷଣ ଦାସ ଲେଖିଲେ - ' ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ସାହିତ୍ୟ ପରି ଅନୁତ୍ତରାଧିକୃତ ମାନସ (Disinherited mind) ର ସ୍ୱାକ୍ଷର ଅଧିକ ନାହିଁ । କିୟର୍କେଗାଡ଼୍ ଜୀବନର ଅସ୍ତିତ୍ୱରେ ଯେଉଁ ଭୟ ଓ ଜୁଗୁପ୍ସା ନିର୍ଣ୍ଣୟ କରିଥିଲେ, ତାହା ମଧ୍ୟ ଖୁବ୍ ବିଶେଷ ପରିମାଣରେ ନାହିଁ । ତାହାର କାରଣ ଓଡ଼ିଶାର ସାମାଜିକ ବିବର୍ତ୍ତନ ପାଶ୍ଚାତ୍ୟ ଦେଶ ତୁଳନାରେ ଅନେକ କମ୍ । ଏଠି ବଂଚିବାର ସ୍ପୃହା ଏ ପର୍ଯ୍ୟନ୍ତ ଅରୁଚି (ଘବଳଝବ଼ଗବ ; ସ୍ତରକୁ ଖସି ଆସିନାହିଁ । ତାହାର କାରଣ ଆମର ବ୍ୟକ୍ତିଗତ ଓ ସମଷ୍ଟିଗତ ଜୀବନ ଉପରେ ଧର୍ମର ପ୍ରଭାବ ଏ ପର୍ଯ୍ୟନ୍ତ ଅନେକଟା ଅପ୍ରତିହତ । ଏ ପ୍ରଭାବ କ୍ରମଶଃ ଦୁର୍ବଳ ହେଉଛି : କିନ୍ତୁ ଏହା ଏପର୍ଯ୍ୟନ୍ତ ଆମ ଦେଶର ସାମୂହିକ ଅଚେତନ (Collective unconscious) ରେ ଏଭଳି ଦୃଢ଼ ଭାବରେ ନିବଦ୍ଧ ଯେ ତାହାର ପ୍ରଭାବରୁ ଓଡ଼ିଆ ଲେଖକ ବା ପାଠକ ମୁକ୍ତ ନୁହଁନ୍ତି । କିନ୍ତୁ ଏହି ଧର୍ମ ବିଶ୍ୱାସର ଦୃଢତା କ୍ରମେ ହ୍ରାସ ପାଉଛି । ମଧ୍ୟଯୁଗର ସାହିତ୍ୟ ସହିତ ଏ ଯୁଗର ସାହିତ୍ୟକୁ ତୁଳନା କଲେ ଏହା ସ୍ପଷ୍ଟ ହୁଏ । ତେବେ ପାଶ୍ଚାତ୍ୟ ସାହିତ୍ୟରେ ଯେଉଁ ଯୁଗ ଯନ୍ତ୍ରଣା (ବଭଶଶ୍ୱବ) ଅଥବା ନାସ୍ତିକ ଭାବର ପ୍ରଚାର ହୋଇଛି, ତାହା ବର୍ତ୍ତମାନ ପର୍ଯ୍ୟନ୍ତ ଆମ ସାହିତ୍ୟକୁ ଗ୍ରାସ କରିନାହିଁ ।' (ସାଂପ୍ରତିକ ସାହିତ୍ୟର ମୁଖବନ୍ଧ - ପ୍ରଫେସର ବିଧୂଭୂଷଣ ଦାସ - 'ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ - ୧୯୭୩)''

ଏଯୁଗର ବିଧ୍ୱସ୍ତ ଅବସ୍ଥାକୁ କବି ଯଦୁନାଥ ଦାସ ମହାପାତ୍ର ବର୍ଣ୍ଣନା କରିଛନ୍ତି ଏହିପରି -

'ପୁରୁଣା ପୃଥିବୀ ଆଜି ବଂଚିବାର ଅଗ୍ନିଶିଖା ତଳେ
ସୂର୍ଯ୍ୟର ଜଂଗଲ ପରି ଅନ୍ତଃସାର ଶୂନ୍ୟ ହୋଇ ଜଳେ,
ଜଳିଯାଏ ଅକାଳେ ମଣିଷ
ଶତାବ୍ଦୀର ମେରୁଦଣ୍ଡ ଭାଂଗିଯାଏ ଆଜି ଅହର୍ନିଶ ।'

ଏହି ବେଦନା ଜଡ଼ିତ, ଯନ୍ତ୍ରଣା ଜଡ଼ିତ ଜୀବନର ପରିଣତି ସଂପର୍କରେ ବିଚଳିତ ହୋଇ ନୂଆ ଦିଗନ୍ତର ସନ୍ଧାନ ପାଇଁ ବ୍ୟାକୁଳ ହୋଇଛନ୍ତି କବି ସଚ୍ଚିଦାନନ୍ଦ ରାଉତରାୟ । ଦୁଇଟି ଯୁଗର ସନ୍ଧିକ୍ଷଣ ମଧ୍ୟରେ ଯେଉଁ ମାନସିକ ସଂଘର୍ଷ ସୃଷ୍ଟି

ହୋଇଛି, ତାହାର ଭାରସାମ୍ୟ ରଖିବା ପାଇଁ ସେ ଆହ୍ୱାନ କରିଛନ୍ତି -

"ତେଣୁ ମାଗେ ଈଶ୍ୱରଙ୍କୁ ବର -
ମହାଶୟ ! ପ୍ରାତ୍ୟହିକ ଏଇ ଜୀବନର
ସରଳରେଖାର ସଂଗେ କାମନା ମୋ ସାମନ୍ତରାଳ
ନ ହେଲେ ନ ନୋହୁ ପଛେ, ତାହା ରଚୁ ସମକୋଣ ସଂଗେ
କରୁ ତାକୁ ବିଦ୍ଧ, ଦ୍ୱିଖଣ୍ଡିତ ,
ଅଥବା ହୋଇଯାଉ ଶତଧା ବିଭକ୍ତ,ଆଘାତେ ଜର୍ଜ୍ଜିତ ।
କିନ୍ତୁ ସେଇ ଆଘାତ ଓ ସଂଘର୍ଷ ଭିତରୁ ହେଉ ଜାତ
ବଂଚିବାର ନୂଆ ପଥ, ଜୀବନର ନୂଆ ଛାଞ୍ଚ ।

(ଭାରସାମ୍ୟ-ସଚ୍ଚିଦାନନ୍ଦ ରାଉତରାୟ -ପାଣ୍ଡୁଲିପି)

ଆଧୁନିକ ମନୁଷ୍ୟର ଅଶେଷ ଦୁଃଖ ଓ ବେଦନାବୋଧ, ନାନା ହତାଶା ଓ ଗ୍ଲାନି ମଧ୍ୟରେ ସେ ସନ୍ତୁଳିତ ହେଉଛି । ଅତୀତରେ ଅନ୍ଧାନୁସରଣ ଯୁଗରେ ସେ ଭଗବାନ ବୋଲି କୌଣସି ଏକ ଅମୂର୍ତ୍ତ ଅଦୃଶ୍ୟ ଶକ୍ତି ଉପରେ ନିର୍ଭର କରି, ନିଜକୁ ସମର୍ପି ଦେଇ ସୁଖ ଦୁଃଖରେ ଶାନ୍ତି ଲାଭ କରୁଥିଲା । ମାତ୍ର ଏଯୁଗରେ ତାହା ଆଉ ସମ୍ଭବ ନୁହେଁ । ଏ ଯୁଗରେ ବୈଜ୍ଞାନିକ ଅନୁଶୀଳନ ଏପରି ଅନ୍ଧାନୁସରଣ ପ୍ରତି ସୁଯୋଗ ଦେଇ ପାରିବ ନାହିଁ ।

ଧ୍ୱସ୍ତ ବିଧ୍ୱସ୍ତ ପୃଥିବୀର ପାଣିପାଗକୁ ଆଲୋଚନା କଲାବେଳେ ଆଧୁନିକ କବି ତା'ର କବିତାରେ କ୍ରମେ କ୍ରମେ ଈଶ୍ୱରଙ୍କ ସଂପର୍କରେ ପ୍ରଶ୍ନବାଚୀ ସୃଷ୍ଟି କରିଥିଲେ ହେଁ ସେ କ୍ରମେ କ୍ରମେ ଆଧ୍ୟାତ୍ମିକତା ଆଡ଼କୁ ଓଟାରି ହୋଇଯାଉଛି । ସେ ଅନୁଭବ କରୁଛି, ପାଶ୍ଚାତ୍ୟର ନେତି ନେତି ସ୍ଲୋଗାନ୍ ମଧ୍ୟରେ ସେ ହତଭଙ୍ଗ ହୋଇ ପଡ଼ିବ । ତା'ର ମନରୁ ଗ୍ଲାନି ,ଭୟ,ସଂକୋଚ ଏବଂ ଜଡ଼ଭାବକୁ ପୋଛି ଦେବା ପାଇଁ ଆଧ୍ୟାତ୍ମିକ ଚିନ୍ତନ ହିଁ ଏକମାତ୍ର ଆଶା ଓ ଭରସା । ଆଜି ସବୁଠାରୁ ସତ୍ୟ ହେଲା ବଂଚିବା । ଏହି ବଂଚିବାଟା କିପରି ବିଡ଼ମ୍ବିତ ହୋଇପଡ଼ିଛି, ତାହା ଆଧୁନିକ ଓଡ଼ିଆ କବିତାରେ ଅନ୍ୟତମ ସଫଳ ସ୍ରଷ୍ଟାର ରମାକାନ୍ତଙ୍କୁ ପଢ଼ାଯାଇପାରେ -

'ଜୀବନର ଚକ୍ର ଘୂରେ,
ଘୂର୍ଣ୍ଣନରେ ପେଷି ହୁଏ ହୃଦୟ ଓ ବିବେକ ଆଦର୍ଶ,

ଜାଇଁବାଟା ବୋଧହୁଏ ଜୀବନର ସବୁଠାରୁ ସତ
ତା'ଠାରୁ ବି ସତ ବୋଧେ ଆଦର୍ଶର ହତ୍ୟା ଆଉ
ବିବେକ ମୃତ୍ୟୁର କାହାଣୀ ।''  (ଚନ୍ଦ୍ରମାର ଚୁଡ଼ି-ରମାକାନ୍ତ ରଥ)

ସେଇ ଅସହାୟ, ସାଥୀହରା, ଆତ୍ମପ୍ରତ୍ୟୟହୀନ, ବ୍ୟର୍ଥତା ପୀଡ଼ିତ, ନୈରାଶ୍ୟ ଜର୍ଜରିତ, ଅତ୍ୟନ୍ତ କଲବଲ ହେଉଥିବା ଆଧୁନିକ ମଣିଷର କଥା କହିଛନ୍ତି କବି ସୀତାକାନ୍ତ -

"ଆଶା ନାହିଁ, ନାହିଁ ଆଶ୍ୱାସନା
ଦୁବଘାସ ଖିଏ ନାହିଁ -ବଉଦର ସ୍ୱପ୍ନ ନାହିଁ
ନାହିଁ କାହିଁ ସବୁଜ ଦ୍ୟୋତନା ।''  (ମୃତ୍ୟୁ ନାଚ - ସୀତାକାନ୍ତ ମହାପାତ୍ର)
ସେଇ ଯନ୍ତ୍ରଣା ସମାନ ପ୍ରତିଧ୍ୱନି ଗୁରୁ ପ୍ରସାଦ କାବ୍ୟ ଚେତନାରେ -

'ଏ ପୃଥିବୀ ଜଣାଯାଏ ବନ୍ଧୁହୀନ, ଜ୍ଞାତିହୀନ କେଉଁ ଏକ ଅନ୍ୟ ଦେଶ ପରି ।''
(ହରେକୃଷ୍ଣ ଦାସ - ଗୁରୁ ପ୍ରସାଦ ମହାନ୍ତି)

ପ୍ରାଚୀନ ଯୁଗର ଉଜ୍ଜ୍ୱଳ ବିଶ୍ୱାସ ଆଜି ନାହିଁ । ନୈତିକତାର ମୂଲ୍ୟବୋଧ ଆଜି ନିଶ୍ଚିତ ଭାବରେ ପରିବର୍ତ୍ତିତ ହୋଇଯାଉଛି । ଜୀବନ କ୍ଷେତ୍ରରେ ପ୍ରତ୍ୟୟର ଆଲୋକ ଅପେକ୍ଷା ଆଜି ସଂଶୟର ଅମାନ୍ଧକାର ମଧ୍ୟରେ ଆଧୁନିକ ମନୁଷ୍ୟ ଆଜି ଅଧିକ ସନ୍ତୁଳି ହେଉଛି । ଜୀବନର ଅଳୀକତା, ଆନ୍ଦୋଳିତ ପରିବେଶ ଏବଂ ହୃଦୟହୀନ ବାତାବରଣ ବିଷୟରେ ସେ ସଚେତନ । ତେଣୁ କବି ଗୁରୁ ପ୍ରସାଦ ତାଙ୍କର ସାର୍ଥକ ସୃଷ୍ଟି 'କାଳପୁରୁଷ' ରେ ଜୀବନର ସମସ୍ତ ତିକ୍ତତା, ଗ୍ଲାନି ଓ ବ୍ୟର୍ଥତା ମଧ୍ୟରେ ଖୋଜିଛନ୍ତି ବ୍ୟାକୁଳ ଚିତ୍ତରେ ଋଷିକଣ୍ଠର ସେହି ଉଦାତ୍ତବାଣୀ

ଏ ଗ୍ରହର ନଷ୍ଟଯାତ୍ରା ଆଜି ଯଦି ଅନ୍ଧାରରୁ,
ଏ ଗ୍ରହର ନଷ୍ଟଯାତ୍ରା ଆଜି ଯଦି ମରଣରୁ,
ଏ ଗ୍ରହର ନଷ୍ଟଯାତ୍ରା ଆଜି ଯଦି ଅସତ୍‌ରୁ ,
ମୃତ୍ୟୁର୍ମା
ଅସତୋ ମା
ତମୋସ ମା
ମୃତ୍ୟୁର୍ମାଂ ...ମୃତ୍ୟୁର୍ମାଂ .....ମୃତ୍ୟୁର୍ମାଂ
ଅମୃତଂ ଗମୟ''  (କାଳପୁରୁଷ)

ଆଉ ଏକ କବିତାରେ ସେଇ ଭାବନାର ପ୍ରତିଧ୍ୱନି -

"ମହାପ୍ରଭୁ ମୁକ୍ତି ଦିଅ ଏହି
ଯାତ୍ରା ଶୁଭ ହେଉ ତୁମର ଦୟାରୁ
ଏହି ଯାତ୍ରା ହେଉ ମୋର ଶେଷ ଯାତ୍ରା
ଏ ଦେହରୁ
ତୁମର ସଂହାର ଢେ଼ଇଁ ବହୁତ,
ବହୁତ କ୍ଲାନ୍ତି, ପୁନରୁକ୍ତି
ଏ ଆତ୍ମାର
ଆଉ ତୁମ ଦୟା, କ୍ଷମା କରୁଣା;
ସମୁଦ୍ର କୂଳରୁ ।          (ଅକୂର ଉବାଚ - ଗୁରୁ ପ୍ରସାଦ ମହାନ୍ତି)

କବି ରମାକାନ୍ତ ରଥ ତାଙ୍କର "ବୋଇତ ବନ୍ଦାଣ'' କବିତାରେ ସେଇ ଜଡ଼ବାଦୀମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି, କୌଣସି ଏକ ବିଶ୍ୱାସ ରୂପକ ଡ଼ଙ୍ଗାରେ ବସିବା ପାଇଁ । ସେତେବେଳେ 'ସମୁଦ୍ର ତା' ଆପଣା ଇଚ୍ଛାରେ ଡ଼ଙ୍ଗାକୁ ଚଳାଇ ନେବ ।' ରମାକାନ୍ତଙ୍କ 'ଚିତ୍ରପ୍ରତିମା' କବିତାରେ ଏହି ଦିବ୍ୟଭାବ ଅଧିକ ପ୍ରକଟିତ ହୋଇଅଛି । ଅବକ୍ଷୟ ଯୁଗ ମନ୍ତ୍ରଣାର ପରିଧି ମଧ୍ୟରୁ ନିଜକୁ ଅପସାରିତ କରି କବି ପହଞ୍ଚିଛନ୍ତି ଏକ ଆଲୋକିତ ଚଉହଦି ମଧ୍ୟରେ । ସେତେବେଳେ କବି ଚିନ୍ତାମଣି ବେହେରାଙ୍କ ଭାଷାରେ ମନେ ପଡ଼ିଯାଏ -

ଚକ୍ଷୁ ମେଲି ରାତି ଚାହେଁ,          ଦେଖେ ମୋର ଶୂନ୍ୟ ସବୁ
ଶୂନ୍ୟ ମୋର ଦୀର୍ଘ ଯାତ୍ରାପଥ,
ଏ ମର୍ତ୍ତ୍ୟର ମରୁ ବୁକେ          ହୃଦୟର ଶୂନ୍ୟ ସ୍ଥାନେ
ଟିକେ ଅଧେ ବିଦ୍ୟୁତର ଝରା,
ଖୋଜଇ ପ୍ରତ୍ୟୟ ପୁଣି,          ମୌସୁମୀର ଶ୍ୟାମ ଶ୍ୱାସ
ସାଜିବାକୁ ଜୀବନର ରଥ,

(ଯାତ୍ରୀ- ଚିନ୍ତାମଣି ବେହେରା)

ଆଧୁନିକ ଓଡ଼ିଆ ସାହିତ୍ୟରେ ଆଉ ଜଣେ ଶକ୍ତିଶାଳୀ କବି ଅନନ୍ତ ପଟ୍ଟନାୟକଙ୍କ କବିତା ଏ କ୍ଷେତ୍ରରେ ଅଧିକ ସମୀଚୀନ ମନେ ହୁଏ । କବି ଅନନ୍ତ ସାମ୍ୟବାଦୀ

ଚିନ୍ତାଧାରାର ବାର୍ତ୍ତାବହ । ସେ ବିଦ୍ରୋହ କରିଛନ୍ତି ପ୍ରାଚୀନ କ୍ଷୟଶୀଳ ପ୍ରତିକ୍ରିୟାଶୀଳ ସମାଜ ବ୍ୟବସ୍ଥା ବିରୁଦ୍ଧରେ । ସେ ହୋଇଛନ୍ତି ଅତିଶୟ ନିଷ୍ଠାର ସହିତ ଆଶାବାଦୀ । ବିପ୍ଳବ ମଧ୍ୟରେ କବି ସାଂପ୍ରତିକ ପରିବର୍ତ୍ତନ କାମନା କରିଛନ୍ତି । ଏହି ରକ୍ତସ୍ନାତ ବିପ୍ଳବର ଘନଘଟା ମଧ୍ୟରେ ଧ୍ୱଂସସ୍ତୂପର ବିଭୀଷିକା ମଧ୍ୟରୁ କବି ଖୋଜିଛନ୍ତି ଆଲୋକର ସନ୍ଧାନ ; ତେଣୁ କବି ଗାଇଛନ୍ତି-

"ମୁଁ କିରେ ଚାହୁଁନି
ଧୂଳି ଧରଣୀର ଧୀର ଶର୍ମିଳ ଗାନ
ମୁଁ କିରେ ଲୋଡୁନି,
ବାହାରେ ଆକାଶ ଭିତରେ ଆକାଶ
ଅନ୍ତ ନାଡ଼ୀର ମଣି ପଦ୍ମରେ ଭୃଙ୍ଗର ହାସ
ମୁଁ କିରେ ମାନିଚି ବ୍ୟବଧାନୀ କଥା ସମ୍ମାନ - ଅବିଧାନ ?
ମୁଁ କିରେ ଖୋଲୁନି ଧର୍ମର ଖଣି
ମରୁ ଖର୍ଜ୍ଜୁରେ ଫୁଲ ଫଲ୍‌ଗୁର ଧାରା
ମୁଁ କିରେ ବୁଣୁନି ଜଗନ୍ନାଥର ବୀଜ ଓଁକାର
"ଜରା'' ଜୀବନର କେତେ ଝୁମୁରର ଜ୍ୱାଳା ।"
(ନିଜେ ବନ୍ଦନା ପଢେ- ଅନନ୍ତ ପଟ୍ଟନାୟକ)

ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ଆଉ ଜଣେ ପ୍ରତିଭାଶାଳୀ କବି ସୀତାକାନ୍ତ ମହାପାତ୍ର ଅନୁରୂପ କଳ୍ପନା କରିଛନ୍ତି ତାଙ୍କର 'ଢାରାଶବରର ସଂଗୀତ'ରେ । ଭଗବାନଙ୍କ ମାୟା ଛଳନା ଦୂରେଇ ରଖିବା ପାଇଁ କବି ଆକୁଳ ନିବେଦନ କରିଛନ୍ତି । ତାଙ୍କର କବିତାରେ ଛତ୍ରେ ଛତ୍ରେ ମାନବିକତା ଓ ମମତାସିକ୍ତ ନିବେଦନ ପ୍ରତିଫଳିତ ହେବାର ଦେଖାଯାଏ ।

" ମାଗୁନି ମୁଁ ଜ୍ଞାନ ତୋର, ମାଗୁନି ମୁଁ ଅସୀମ ତୋ ସ୍ମୃତି,
ହେ ମାୟାବି ! ବିଶ୍ୱରୂପ ଖାଲି ମୋର ଏତିକି ମିନତି
ଯୁଗେ ଯୁଗେ ତୀର ମୋର ଦେଉ ତୋତେ
ତୋ ଦେହରୁ, ତୋ ଆପଣା ଛଳନାରୁ ଦେଉ ତୋତେଇ ମୁକତି ।
ଯୁଗେ ଯୁଗେ କାନ୍ଦେ ମୁଇଁ କଇଁ କଇଁ, କଂଅଡ଼ା ମୋ
ବକ୍ଷେ ଚାପି, କଅଁଳ ଏ ଛନ ଛନ

ଜାମୁକୋଳି ରଂଗ ଲିପା ତୋ ପାଦ ଦିଓଟି ।''

( ଜଙ୍ଘା ଶବରର ସଂଗୀତ-ସୀତାକାନ୍ତ ମହାପାତ୍ର )

ସାଂପ୍ରତିକ ଓଡ଼ିଆ କବିତାରେ କାହିଁକି, ଆଜି ସମଗ୍ର ମାନବ ସମାଜର କବିତାରେ ଆଧ୍ୟାତ୍ମିକତାର ସମ୍ବେଦନଶୀଳତା ପ୍ରତିଫଳିତ ହେବା ସ୍ୱାଭାବିକ । ଏଥିରୁ ଓଡ଼ିଆ କବିତା ବଂଚିତ ହେବାର କୌଣସି କାରଣ ନାହିଁ । ଜଡ଼ବାଦୀ ସଭ୍ୟତାର ପ୍ରଗତି ପଥରେ ବହୁଦୂର ଅତିକ୍ରମ କରି ଗଲା ପରେ ଆଧୁନିକ ମାନବ ସମାଜ ଯେଉଁ ମାନସିକ ସଂକଟର ସମ୍ମୁଖୀନ ହୋଇ ଦିଗଭ୍ରାନ୍ତ ହୋଇ ପଡ଼ିଛି, ସେହି ବିଚଳିତ ପରିବେଶରୁ ଆଧ୍ୟାତ୍ମିକ ଭାବନାର ଶରଣ ପଶିବା ବ୍ୟତୀତ କିଏ ତାକୁ ଉଦ୍ଧାର କରିପାରିବ ? ଏ ଆଧ୍ୟାତ୍ମିକ ବିଶ୍ୱାସ ବ୍ୟତିରେକ କିଏ ଆଉ ତା'ର ମନ ଓ ପ୍ରାଣରେ ଅମୃତର ପ୍ରଲେପ ବୋଳି ଦେବାକୁ କ୍ଷମ ହେବ ? ଅହଂକାରୀ ଉଦ୍ଧତ ମନ ନେଇ ସେ ଯେଉଁଦିନ ଈଶ୍ୱରରୂପୀ ଭାବନାକୁ ଅବିଶ୍ୱାସ କଲା, ପରିଶେଷରେ ହତ୍ୟା କଲା, ସେ ମନେକଲା ଯେ ପୃଥିବୀର ସମୃଦ୍ଧି ଆନୟନ ପାଇଁ ସେ ଯେପରି ଏକ ଅନତିକ୍ରମ୍ୟ ଗଡ଼କୁ ଜିଣି ସାରିଛି । ମାତ୍ର ପରିଣତିର ନିଜେ ମାନବ ସମାଜ କେବଳ ଅବିଶ୍ୱାସର ବିଷାକ୍ତ ଧୂମକୁଣ୍ଡଳୀ ମଧ୍ୟରେ କଲବଲ ହେବାକୁ ଲାଗିଲା । ଜୀବନ କ୍ଷେତ୍ରରେ ପ୍ରତ୍ୟୟର ଆଲୋକ ଲିଭିଗଲା । କବିତା କେବଳ ଅସ୍ଥିରତା ଓ ବିଷାଦର ରାଗିଣୀରେ କରୁଣ ହୋଇଉଠିଲା । କବିତା କେବଳ ସମାଜର ଟେପରେକର୍ଡ଼ର ହେବ ନାହିଁ, ତାକୁ ଜୀବନ୍ୟାସ ଦେବା ପାଇଁ ଚେଷ୍ଟା କରିବ । ତାହା ହିଁ ସମ୍ଭବ ହୋଇଛି, ବର୍ତ୍ତମାନର ପାଶ୍ଚାତ୍ୟ ସାହିତ୍ୟରେ ଯେଉଁଠାରେ ଜଡ଼ବାଦୀ ଦର୍ଶନର ଅହମିକା ସମାଜର ମନସ୍ତତ୍ତ୍ୱକୁ ଉଦଭ୍ରାନ୍ତ କରି ଆସିଥିଲା ଯୁଗ ଯୁଗ ଧରି । ମାତ୍ର ଭାରତୀୟ ସମାଜର ଏହା ସମ୍ଭବ ନୁହେଁ । ହୁଏତ ସାମୟିକ ପାଶ୍ଚାତ୍ୟ ଭାବଧାରାର ପ୍ରଭାବ ଆଧ୍ୟାତ୍ମିକ ଭାବନା ମୂଳରେ ଅବିଶ୍ୱାସର କୁଠାରଘାତ କରିଥିଲା, ମାତ୍ର ତାହା ସଫଳକାମ ହେବା ପୂର୍ବରୁ କବି ଅନୁଭବ କଲା ଯେ ସାମଗ୍ରିକ ଭାବରେ ଆଧ୍ୟାତ୍ମିକ ଭାବନାର ଦ୍ୟୋତନା ବ୍ୟତିରେକ ସାଂପ୍ରତିକ ସମାଜର ଅସ୍ଥିରତାରୁ ରକ୍ଷା ପାଇବା ପାଇଁ ଅନ୍ୟ କୌଣସି ଉପାୟ ନାହିଁ । ଏଥିପାଇଁ ତାକୁ ସାହାଯ୍ୟ କଲା, ଏ ଦେଶର ମହାନ ଆଧ୍ୟାତ୍ମିକ ପରମ୍ପରା ଏବଂ ସାଂପ୍ରତିକ ଜଡ଼ବାଦୀ ସମାଜର ବିକଳ ପରିଣତି । ତେଣୁ ଆଧୁନିକ କବି ଜୀବନକୁ ଖୋଜି ପାଇଛି, ନିଜର ସାଂସ୍କୃତିକ ଚେତନା ମଧ୍ୟରେ ଆଧ୍ୟାତ୍ମିକତାର ସନ୍ଧାନ କରି । ❋

ଅବସରପ୍ରାପ୍ତ ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ

# ଆଧ୍ୟାତ୍ମିକତା ଓ ଆଧୁନିକ କବିତା : ଜନଜୀବନ ଉପରେ ଏହାର ପ୍ରଭାବ

☆ ଡ଼ଃ ହରିଶ୍ଚନ୍ଦ୍ର ବେହେରା

ଯେଉଁ ସାହିତ୍ୟ ଆମର ଇନ୍ଦ୍ରିୟ, ଭାବ, ଚିତ୍ତ,ବୁଦ୍ଧି, ପ୍ରାଣ ସମସ୍ତଙ୍କୁ ସ୍ପର୍ଶ କରେ ବା ସ୍ପର୍ଶ କରିବାର ଉପାଦାନ ଥାଏ ଏବଂ ଏ ମାନଙ୍କ ଭିତରେ ଆଲୋଡ଼ନ ସୃଷ୍ଟି କରେ ତାହାହିଁ ମୁଖ୍ୟତଃ ଆଧାତ୍ମିକ ସ୍ତରର ସାହିତ୍ୟ । ସାହିତ୍ୟକୁ ମୋଟାମୋଟି ଭାବେ ଇନ୍ଦ୍ରିୟ ପ୍ରବଣ,ଭାବ ପ୍ରବଣ,ଚିତ୍ତ ପ୍ରବଣ, ବୁଦ୍ଧି ପ୍ରବଣ ଏବଂ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ବିଚାର କରାଯାଇଥାଏ । ମହାଭାରତ ବା ଭାଗବତ ପାଠ କଲେ ଆମର ଇନ୍ଦ୍ରିୟ ପ୍ରବଣତା,ବୁଦ୍ଧି ପ୍ରବଣତା, ଆଧ୍ୟାତ୍ମିକତା ଏକା ସଙ୍ଗରେ ଜାତ ହୁଏ ଏବଂ ଏସବୁ ମିଶି ପାଠକ ଭିତରେ ମହା ଆଲୋଡ଼ନ ସୃଷ୍ଟି ହୁଏ । ଶ୍ରୀମଦ୍ ଭାଗବତ୍ ଗୀତାରେ 'ଆଧ୍ୟାତ୍ମ' ଶବ୍ଦର ବ୍ୟାଖ୍ୟା କରି କୁହାଯାଇଛି – 'ସ୍ୱଭାବୋଽଧ୍ୟାତ୍ମଉଚ୍ୟତେ' (୮/୩) ଜୀବ ବା ପଦାର୍ଥର ସ୍ୱ ସତ୍ତା ବା ମୌଳିକ ସତ୍ତାକୁ ଆଧ୍ୟାତ୍ମ କୁହାଯାଏ । ଆଧ୍ୟାତ୍ମିକ ଚେତନାର ମୂଳକଥା ହେଉଛି ମୁଁ ଏବଂ ବିଶ୍ୱର ଯେକୌଣସି ପ୍ରାଣୀ ଓ ବସ୍ତୁ ଭିତରେ କୌଣସି ପାର୍ଥକ୍ୟ ନାହିଁ । ପ୍ରତ୍ୟେକ ପ୍ରାଣୀ ଭିତରେ ଗୋଟିଏ ମୌଳିକ ଭାବ ଅଛି ଅର୍ଥାତ୍ ସସୀମରୁ ଅସୀମକୁ ଯିବା । ମନୁଷ୍ୟର ସାମୂହିକ ବ୍ୟାକୁଳତାଟି ହେଉଛି ଆଧ୍ୟାତ୍ମିକ – ସସୀମ ଚାହେଁ ଅସୀମ ହେବାକୁ । ଏଇ ଅସୀମର ସନ୍ଧାନ ହିଁ ଆଧ୍ୟାତ୍ମିକତାର ବଡ଼ କଥା । ଯେଉଁ ସାହିତ୍ୟରେ ଅସୀମ ସନ୍ଧାନ ପାଇଁ ବ୍ୟାକୁଳତା ଅଛି, ତାହାହିଁ ଆଧ୍ୟାତ୍ମିକ ସାହିତ୍ୟ । ଆଧ୍ୟାତ୍ମିକ ବିକାଶର ଉଦ୍ଦେଶ୍ୟ ହେଲା ଦ୍ୱାନ୍ଦ୍ୱିକତା ଭିତରେ ଗତି କରି ଦ୍ୱନ୍ଦ୍ୱତିକ୍ରାନ୍ତ ହୋଇ ଦ୍ୱନ୍ଦ୍ୱହୀନ ହେବ । ଆଧିଭୌତିକ ଜଗତର ନାନା ବିରୋଧ ମଧ୍ୟରେ ଐକ୍ୟକୁ ଅନୁଭବ କରି ଅସୀମତାକୁ ଉପଲବ୍ଧି କରିବା ଆଧ୍ୟାତ୍ମିକତାର ଲକ୍ଷ୍ୟ । ଇନ୍ଦ୍ରିୟକୁ ଅତିକ୍ରମ କରି ଇନ୍ଦ୍ରିୟାତୀତ ସତ୍ୟ ଅନ୍ୱେଷଣ କରିବା "ଶାନ୍ତି, ପ୍ରେମ, ଐକ୍ୟ" ହେଉଛି ବ୍ୟକ୍ତିର ଆଧ୍ୟାତ୍ମିକ ଜୀବନର ସ୍ୱପ୍ନ ।

ଆଧୁନିକ ସାହିତ୍ୟ କହିଲେ ଅତୀତର ମୂଲ୍ୟବୋଧ ସହିତ ସାଂପ୍ରତିକ ସମୟ ତଥା ନୂଆ ମଣିଷର ଆନ୍ତରତମ ଦୃଷ୍ଟି ଭଙ୍ଗୀର ସମନ୍ୱୟ ଉପରେ ଗଢ଼ି ଉଠିଥିବା ସାହିତ୍ୟକୁ ମୁଖ୍ୟତଃ ବୁଝାଏ । ଆଧୁନିକ ମଣିଷର ଜୀବନ ଜିଜ୍ଞାସା ତଥା ତା'ର ସଂଶୟ, ସଂକଟ, ଅସହାୟତାକୁ ରୂପ ଦେବା ବେଳେ ଆଧୁନିକ ଲେଖକ ଆଧ୍ୟାତ୍ମିକ

ଭାବ ଚେତନା ସହ ନିଜର ଅନୁଭବକୁ ସମନ୍ୱୟ କରାଇ ନିରପେକ୍ଷ ଭାବେ ନିଜର ବକ୍ତବ୍ୟକୁ  ଅଧିକ ଆବେଦନ କରିବାକୁ ଚେଷ୍ଟା କରନ୍ତି । ଆଧୁନିକତାର ବଡ଼ ଲକ୍ଷଣ ନିରପେକ୍ଷ ଦୃଷ୍ଟିରେ ବାସ୍ତବତାକୁ ବିଶ୍ଲେଷଣ କରିବା । ଏ ସଂପର୍କରେ ରବୀନ୍ଦ୍ରନାଥଙ୍କର ମତଟି ଉଲ୍ଲେଖଯୋଗ୍ୟ - ' ଆଧୁନିକ ବିଜ୍ଞାନ ଯେ ରୂପ ନିରାସକ୍ତ ଚିତ୍ତେ ବାସ୍ତବକୁ ବିଶ୍ଲେଷଣ କରେ, ଆଧୁନିକ କାବ୍ୟ ସେଇରୂପ ନିରାସକ୍ତ ଚିତ୍ତେ ବିଶ୍ୱକୁ ସମଗ୍ର ଭାବେ ଦେଖିବେ -ଏହାଇ ଶାଶ୍ୱତ ଭାବେ ଆଧୁନିକ ।' ତେଣୁ ରବୀନ୍ଦ୍ର ନାଥଙ୍କ କହିବାର ଉଦ୍ଦେଶ୍ୟ ଥିଲା ବିଶ୍ୱକୁ ବ୍ୟକ୍ତିଗତ ଆସକ୍ତିର ସହିତ ଯୁକ୍ତ ନରଖି ନିର୍ବିକାର ତଦ୍‌ଗତ ଭାବେ ଦେଖିବାହିଁ ସାହିତ୍ୟିକର ଉଦ୍ଦେଶ୍ୟ ହେବା ଉଚିତ '। ସାହିତ୍ୟ ବ୍ୟକ୍ତିଗତ ଅନୁଭୂତିରୁ ଉତ୍ସାହିତ ହୋଇ ମଧ୍ୟ ବିଶ୍ୱଜନୀନ ହେବା ଦରକାର  । ସାହିତ୍ୟ ଯେତେ ନୈର୍ବ୍ୟକ୍ତିକ ହେବ ତାହା ସେତେ ବଳିଷ୍ଠ ସାହିତ୍ୟର ମର୍ଯ୍ୟାଦା ଲାଭ କରିବ । କବି ଇଲିୟଟ୍ ଏହି ନୈର୍ବ୍ୟକ୍ତିକତା ଉପରେ ହିଁ ଗୁରୁତ୍ୱାରୋପ କରିଛନ୍ତି । ଆମର ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ଏତେ ଲୋକପ୍ରିୟତା ଅର୍ଜନ କରିବାର ନେପଥ୍ୟରେ ଯେଉଁ କାରଣଟି ବିଦ୍ୟମାନ ତାହା ଏହି ନୈର୍ବ୍ୟକ୍ତିକତା ଅର୍ଜନ କରିବାର ନେପଥ୍ୟରେ ଯେଉଁ କାରଣଟି ବିଦ୍ୟମାନ ତାହା ଏହି ନୈର୍ବ୍ୟକ୍ତିକତା ଓ ଆଧ୍ୟାତ୍ମିକତା ଲାଗି । ଦୀର୍ଘ ପାଞ୍ଚଶତ ବର୍ଷ ପରେ ସାରଳାଙ୍କ ମହାଭାରତ କିମ୍ୱା ଜଗନ୍ନାଥ ଦାସଙ୍କ ଭାଗବତ ଏତେ ଜୀବନ୍ତ ରହି ପାରିଛି ତା'ର କାରଣ ହେଉଛି ଭଗବତ୍ ଚେତନା ପ୍ରତି ଲୋକ ମନର ଅବଚେତନରେ ଥିବା ଆସକ୍ତି ।

ତେବେ ମାର୍କସ, ନିତ୍‌ସେ ପ୍ରମୁଖ ବିଶ୍ୱର କଲ୍ୟାଣକାମୀ ମନିଷୀମାନେ ଉପଲବ୍ଧି କରିଥିଲେ ଯେ, ପୁଞ୍ଜିପତି , ଶୋଷକ ଗୋଷ୍ଠୀ ତଥା ଧର୍ମଯାଜକ ଓ ପୁରୋହିତ ବର୍ଗ ଯୁଗେ ଯୁଗେ ଧର୍ମ ଓ ଆଧ୍ୟାତ୍ମିକତାର ଦ୍ୱାହି ଦେଇ ସାଧାରଣ ମଣିଷ ବର୍ଗଙ୍କୁ ଶୋଷଣ କରବାର ମାର୍ଗ ସୁଗମ କରି ନେଇଛନ୍ତି । ଏହି ଚିନ୍ତା ଚେତନା ଉପରେ ମାର୍କସବାଦୀ ଦର୍ଶନ ଗଢ଼ି ଉଠିଥିଲା  ଏବଂ ଏହି ଦର୍ଶନ ଅନେକ ଦିନ ଧରି ବିଶ୍ୱ ଉପରେ ଗଭୀର ପ୍ରଭାବ ବିସ୍ତାର କରିଥିଲା । ବିଶ୍ୱର ଅଧିକାଂଶ ସାହିତ୍ୟ ଏହି ଚେତନାକୁ ଆଦରି ନେଇ ଶୋଷଣର ନିରାକରଣ ଦିଗରେ ଏହାକୁ ବାହନ କଲେ । ଓଡ଼ିଶାର ମାର୍କସପନ୍ଥୀ କବିମାନେ ମଧ୍ୟ ସେମାନଙ୍କ କବିତାରେ ଏହି ଚେତନାର ପ୍ରସାର ପାଇଁ କମ୍ ପ୍ରୟାସ କରି ନାହାଁନ୍ତି । ସଚ୍ଚି ରାଉତରାୟ ଥିଲେ ଏହି ଚିନ୍ତାଦର୍ଶର ମୁଖ୍ୟ ନାୟକ । ତାଙ୍କର କେତୋଟି କବିତାର ଉଦ୍ଧୃତିରୁ ଏହା ସ୍ପଷ୍ଟ ।

"ଧର୍ମର ମଦ ଖୁଆଇ କରିଛ ଭାଇ

ମଣିଷ ଜାତିକୁ ଚିରଦିନ ମଜଗୁଲ,
ଅଫିମ ନିଶାରେ ଖୋଲି ସେ ନ ପାରେ ଆଖି
ତମେ ଶୋଷ ତା'ର ବୁକୁର ଜୀବନ ଫୁଲ ।" (ସର୍ବନାଶର ପଥେ)

XXX XXX

ଜାଣିଥାଅ ଭାଇ ଧର୍ମଟି ହେଲା ସବୁ ଫିସାଦର ଚାବି
ସେ ଚାବି ରହିଛି ଧନୀକ ହାତରେ ତମେ ମର ଏବେ ଭାବି
ସବୁ ଶୋଷଣର ଧର୍ମଟା ଭାଇ ଅଟଇ ଅସଲ ମଞ୍ଜି
ଆତ୍ମାକୁ ଆମ କରେ ସେ ପଙ୍ଗୁ ଗେରୁଆ ରଂଗେ ରଞ୍ଜି ।

(ଜୁଆଚୋରି ଅଭିଧାନ) (ସଚ୍ଚି ରାଉତ)

କେବଳ ରାଉତରାୟଙ୍କ କବିତାରେ ନୁହେଁ ସେ ସମୟର ଅନେକ କବିଙ୍କ କବିତାରେ ଭାଗ୍ୟ ଓ ଭଗବାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରାଯାଇଛି । ବେଣୁଧର ରାଉତଙ୍କର ପିଙ୍ଗଳାର ସୂର୍ଯ୍ୟରେ ଈଶ୍ୱର ହୀନତାର ବାଣୀ ଘୋଷଣା କରିଛନ୍ତି -

ମୁଁ ଇ ତ ଗାଉଚି ଈଶ୍ୱର କଥା ମନେ ଆଉ ରଖ ନାହିଁ
ଈଶ୍ୱର ଥାଇ କି ନଥାଇ କି ଯାଏ ଆସେ
--- --- ---
ମୁଁ ଆଜି ଗାଉଚି ମଣିଷର ଜୟଗୀତି
ମଣିଷ ଜାତିର ଭରା ଜୀବନ ଓ ସରଳ ଚିତ୍ତଗାନ ।''

(ବୃହନ୍ନଳା - ବେଣୁଧର ରାଉତ)

ମାନ ସିଂ ମଧ୍ୟ ଈଶ୍ୱରଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛନ୍ତି -

ତୁମକୁ କରୁନି ନମସ୍କାର ।
ହେ ଈଶ୍ୱର, ଦେଉଳ ଗୀର୍ଜାର ।
ହେ ଈଶ୍ୱର, ମୌଲବୀ ମୁଲ୍ଲାର । ତୁମକୁ କରୁନି ନମସ୍କାର ।
ଗଢ଼ିଛି ତୁମକୁ ଧନୀକ ଦେବତା ନିଜର ସ୍ୱାର୍ଥ ପାଇଁ
ଫରମାସେ ତା'ର ହୋଇଛ ତିଆରି
ତାହାରି ବିରାଜ ପାଇଁ ।'' (ନମସ୍କାର- ମାନ ସିଂ)

କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଯାଦୁଘର, ପୁରୀ ମନ୍ଦିର ପ୍ରଭୃତି କବିତାରେ ଏ

ସ୍ୱର ଆହୁରି ତୀବ୍ର । ଦୁର୍ଗାଚରଣ ସାମନ୍ତ, ସୁନନ୍ଦ କର, କୃଷ୍ଣ ଚନ୍ଦ୍ର କର, ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର,ରବି ସିଂ ପ୍ରଭୃତି କବିଙ୍କ କବିତାରେ ଭଗବାନଙ୍କ ଅପେକ୍ଷା ସର୍ବହରା ମଣିଷର ବନ୍ଦନା କରିବା ସଂଗେ ସଂଗେ ତା'ର ଦୁଃଖ, ନିର୍ଯ୍ୟାତନା, ଶୋଷଣ କଷଣର ନିରାକରଣ ପାଇଁ କବିତାରେ ସଚେତନତା ସୃଷ୍ଟି କରିଛନ୍ତି । କାର୍ଲମାର୍କସ୍, ଲେନିନ୍, ପୁଷ୍କିନ୍, ଦସ୍ତୋଭସ୍କି, ମାୟୋକୋଭସ୍କି, ଗର୍କି ପ୍ରଭୃତି ବିଶ୍ୱବନ୍ଦିତ ପ୍ରଗତିବାଦୀ ଚିନ୍ତାନାୟକ ଓ ଲେଖକଙ୍କର ସାମ୍ୟବାଦୀ ଚିନ୍ତା ଚେତନାକୁ ଓଡ଼ିଶାର ପ୍ରଗତିବାଦୀ କବିମାନେ ସେମାନଙ୍କର କବିତାରେ ଦେବାକୁ ଚେଷ୍ଟା କରିଛନ୍ତି । ତେବେ ଏଠାରେ ମନରେ ପ୍ରଶ୍ନ ଆସେ ଭାଗ୍ୟ ଓ ଭଗବାନଙ୍କ ବିରୁଦ୍ଧରେ ଲେଖନୀ ଚାଳନା କରି ଶୋଷିତ ମଣିଷଙ୍କୁ ଉପଯୁକ୍ତ ନ୍ୟାୟ ଦେବାକୁ ଚେଷ୍ଟା କରିଥିବା କବିମାନେ ପ୍ରକୃତରେ ଆଧ୍ୟାତ୍ମବାଦ ବିରୋଧୀ କି ? ଶ୍ରମଜୀବୀ ମଣିଷ ପ୍ରତି ଦରଦ, ଶ୍ରଦ୍ଧା, ସହାନୁଭୂତିଶୀଳ ଏସବୁ ବୈପ୍ଳବିକ କାବ୍ୟ ମାନସ ଆଧ୍ୟାତ୍ମବାଦର କ'ଣ ଧାର ଧାରନ୍ତି ନାହିଁ ?? ଏ ପ୍ରଶ୍ନର ଉତ୍ତର ଖୋଜିବା ବେଳେ ସ୍ୱର୍ଗତ ବାମାଚରଣ ମିତ୍ରଙ୍କର ଉକ୍ତିଟିଏ ମନକୁ ଆସେ । ମାର୍କସଙ୍କ ସଂପର୍କରେ କହିଥିବା ଅତି ମୂଲ୍ୟବାନ କଥାଟି ଏଠାରେ ଉଲ୍ଲେଖଯୋଗ୍ୟ - ମାର୍କସ ତ ଏକ ଆଧ୍ୟାତ୍ମିକ ବ୍ୟକ୍ତି । ତାଙ୍କର ହୃଦୟ କାରୁଣ୍ୟରେ ପୂର୍ଣ୍ଣ ଯେଉଁଥି ପାଇଁ କି ବିଶ୍ୱର ଆର୍ଥିକ ଦୁର୍ଗତି ଦୂର କରିବା ପାଇଁ ସେ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ ।'' (ଜୀବନ, ସାହିତ୍ୟ ଓ କଳା - ପୃ.୨୦)

ମଣିଷର ଲୁହ ଲହୁରେ ନୀଳବର୍ଣ୍ଣ ଧାରଣ କରିଥିବା କବିତାରେ କବିଙ୍କୁ ଏ ଦୃଷ୍ଟିରୁ କେତେଦୂର ଆଧ୍ୟାତ୍ମିକତା ବିରୋଧି ବୋଲି କହି ପାରିବ ! ଶୋଷଣ ପାଇଁ ଦାୟୀ ଯେଉଁ କାରଣ ସେ କାରଣର ନିରାକରଣ ଲାଗି ପ୍ରଗତିବାଦୀ ଯୁଗର କବିମାନେ ସ୍ୱର ଉତ୍ତୋଳନ କରିଥିଲେ । ଧର୍ମପ୍ରତି ଥିବା ଅନ୍ଧବିଶ୍ୱାସ ବିରୁଦ୍ଧରେ ସେମାନେ କେବଳ ବିଦ୍ରୋହ କରିଥିଲେ ।

ଦୁଇ ଦୁଇଟି ବିଶ୍ୱମହାସମର ପରେ ମଣିଷର ଭାଗ୍ୟ ଓ ଭଗବାନଙ୍କ ପ୍ରତି ଥିବା ପ୍ରତ୍ୟୟ ନଷ୍ଟ ହୋଇଗଲା ଭଗବାନଙ୍କର ସ୍ଥିତି ସଂପର୍କରେ ସେ ସନ୍ଦୀହାନି ହୋଇ ପଡ଼ିଲା । ସେହିପରି ବିଜ୍ଞାନର ଅଭୂତପୂର୍ବ ସାଫଲ୍ୟ ଏବଂ ଯନ୍ତ୍ରସଭ୍ୟତାର ବିକାଶ ଫଳରେ ମଣିଷର ଆଧ୍ୟାତ୍ମିକ ଜିଜ୍ଞାସା ଭିନ୍ନ ମୋଡ଼ ନେଲା । ମଣିଷକୁ ଦୁଃଖ, ରୋଗ, ଯନ୍ତ୍ରଣା, ଅସହାୟତାରୁ କୌଣସି ଭଗବାନ ଉଦ୍ଧାର କରିପାରିବ ନାହିଁ ଏ ପ୍ରକାର ବିଶ୍ୱାସ ତା' ଭିତରେ ବଦ୍ଧମୂଳ ହେଲା ।

"ତମେ ମଧ୍ୟ ସମୁଦ୍ରର ଦାବୀ ଠାରୁ

ଆପଣାକୁ ଦୂରରେ ରଖିଚ,
କି ଲୀଳା ହେ ମହାବାହୁ !
ପାଚେରୀ ତମର ସତେ
କେତେ ଦମ୍ଭ କେତେ ଯେ ବଧୀର
ସ୍ତବ୍ଧ ଆଉ ଉଚ୍ଚ,
ସମୁଦ୍ରର ପାଟି ତୁଣ୍ଡ
ଡ଼ାକ ହାକ ସବୁ ସେଠି ସତେ ଅପହଞ୍ଚ ।'' (ସୀତାକାନ୍ତ -)

ପ୍ରାତ୍ୟହିକ ଜୀବନରେ ଦୁଃଖ ଯନ୍ତ୍ରଣା, ଅସହାୟତା, ସଂକଟ, ଦ୍ୱନ୍ଦ୍ୱ, ନିଃସଙ୍ଗତା ଭିତରେ କବି ଚିନ୍ତାମଣି ବେହେରା ଆଧ୍ୟାତ୍ମିକ ସାହାରାଟିଏ ଖୋଜିଛନ୍ତି ମାତ୍ର କୌଣସି ସାହାରାର ସନ୍ଧାନ ପାଇ ନାହାଁନ୍ତି -

" ହେ ସ୍ରଷ୍ଟା
ଏହି ଦିଗମ୍ବର ସୃଷ୍ଟି କି ତୁମର
ଏହି ସୃଷ୍ଟି ତୁମର କି ଖିଆଲର ?
କାହିଁ ତୁମକୁ ତ ମୁଁ ଦେଖିନି
ପ୍ରାତ୍ୟହିକ ଜୀବନର ଦୈନ୍ୟ
ଘୂର୍ଣ୍ଣମାନ ଜୀବନର ମରୁ ବୁକୁରେ
ତୁମକୁ ତ ମୁଁ ପାଏନି ?'' (ତୃତୀୟ ଚକ୍ଷୁ)

ସେହିପରି ଅସହାୟତା, କାରୁଣ୍ୟ, ଅସ୍ଥିରତା, ସଂକଟ ଭିତରୁ ସାଂପ୍ରତିକ ମଣିଷର ମୁକ୍ତି ପିପାସୁକୁ ଗୁରୁ ପ୍ରସାଦ ଭାଗବତର ଏକପାଦ ବିଶିଷ୍ଟ ବୃଷଭ ପ୍ରସଙ୍ଗ ମାଧ୍ୟମରେ ଅବତାରଣା କରିଛନ୍ତି । ବୃଷଭଟି ଧର୍ମର ପ୍ରତୀକ ଏବଂ ତା'ର ଗୋଟିଏ ପାଦ ଅବଶିଷ୍ଟ 'ସତ୍ୟ'ର ପ୍ରତୀକ । କଳି ବୃଷଭର ଏହି ପାଦଟିକୁ ଯଷ୍ଟିରେ ଆଘାତ କରି ରକ୍ତାକ୍ତ କରୁଛି ।'' ସାଂପ୍ରତିକ ମଣିଷର ଆଧ୍ୟାତ୍ମିକ ସଂକଟ ଓ ବିପର୍ଯ୍ୟସ୍ତ ମୂଲ୍ୟବୋଧ ଭିତରେ ଅବଶିଷ୍ଟ ସତ୍ୟର ଆର୍ତ୍ତନାଦର ମାର୍ମିକ ଚିତ୍ର କବି ଗୁରୁ ପ୍ରସାଦ ତାଙ୍କର କାଳ ପୁରୁଷରେ ଉଲ୍ଲେଖ କରିଛନ୍ତି -

" କିନ୍ତୁ ମୋର ସମ୍ମୁଖରେ ଏ ବିଚିତ୍ର ଏକ ପାଦ ବିଶିଷ୍ଟ ବୃଷଭ
ପୁଣିଏହି ଭଦ୍ରଲୋକ ଧଳା ଧୋତି ପଞ୍ଜାବୀ ଓ
ଧଳା ଟୋପି ଧଳାକାର ବର୍ଣ୍ଣ ପୁଣି ଈଷତ୍ ପିଙ୍ଗଳ
ଯଷ୍ଟିର ଆଘାତ ଆଉ ବୃଷଭର ଆର୍ତ୍ତନାଦ ।"

ତାଙ୍କର 'ଅକ୍ରୁର ଉବାଚ'' କବିତାରେ ଆଧ୍ୟାତ୍ମିକ ଅବକ୍ଷୟର ସ୍ୱର ଆହୁରି ତୀବ୍ର । ଭାଗବତ ବର୍ଣ୍ଣିତ ଉପାଖ୍ୟାନ ସହିତ ସାଂପ୍ରତିକ ସମୟ ତଥା ମଣିଷର ଅସହାୟତା, ଆଧ୍ୟାତ୍ମିକ ଅବକ୍ଷୟକୁ ସଂଯୋଗ କରାଇ ବକ୍ତବ୍ୟକୁ ଅଧିକ ଶାଣିତ କରିପାରିଛନ୍ତି । ଅକ୍ରୁର ସାଂପ୍ରତିକ ମଣିଷର ପ୍ରତୀକ ଯିଏ କି ବସ୍ତୁବାଦୀ ମୋହ ଓ ଦେହରୂପୀ ନର୍କରୁ ସବୁଦିନ ଲାଗି ମୁକ୍ତି ଚାହୁଁଛି, ମୂଲ୍ୟବୋଧ ହୀନତାରୁ ମୁକ୍ତ ହୋଇ ଆଉ ଏକ ନୂତନ ମୂଲ୍ୟବୋଧ ସହ ସାମିଲ ହେବା ଲାଗି ଆକୁଳତା ପ୍ରକାଶ କରିଛି

"ମହାପ୍ରଭୁ ମୁକ୍ତି ଦିଅ
ଏହି ଯାତ୍ରା ଶୁଭ ହେଉ ତୁମର ଦୟାରୁ
ଏହି ଯାତ୍ରା ହେଉ ମୋର ଶେଷ ଯାତ୍ରା
ଏ ଦେହରୁ
ତୁମର ସଂହାର ଢ଼େଇଁ ବହୁତ ବହୁତ କ୍ଳାନ୍ତି
ପୁନରୁକ୍ତି ଏ ଆତ୍ମାର
ଆଉ ତୁମ ଦୟା କ୍ଷମା କରୁଣାର
ସମୁଦ୍ର କୂଳରୁ ।''        (ଅକ୍ରୁର ଉବାଚ)

ବେଣୁଧର ରାଉତଙ୍କ "ପିଙ୍ଗଳାର ସୂର୍ଯ୍ୟ' ଓ 'ପିଙ୍ଗଳାର ରାତ୍ରି' କବିତାରେ ରୂପଜୀବୀ ପିଙ୍ଗଳାର ଦେହ ସଂଭୋଗ ଊର୍ଦ୍ଧ୍ୱରେ ବୃହତ୍ତର ଆଧ୍ୟାତ୍ମିକ ଚେତନା ସହ ସାମିଲ ହୋଇଯିବାର ଆକୂତିକୁ ଲକ୍ଷ୍ୟ କରିହୁଏ । ପିଙ୍ଗଳା ସାଂପ୍ରତିକ ମଣିଷର ସୀମାହୀନ କାମନା ଓ ଭୋଗ ସର୍ବସ୍ୱତାର ପ୍ରତୀକ । ଆଦିମ କାମନା ଓ ଭୋଗର ଯନ୍ତ୍ରଣା ଭିତରୁ ମଣିଷ ଆଜି ମୁକ୍ତି ଖୋଜୁଛି । ପିଙ୍ଗଳାର ସତ୍ତା ଭିତର ଦେଇ -

"ମାଂସର ବିଳାପ ମାତ୍ର ଅନୁଘୋଷେ ଶୁଭୁଅଛି
ପିଙ୍ଗଳାର ପ୍ରିୟ କାହିଁ ? କାହିଁ ?
ଶୋଣିତ ଅଗ୍ନିର ଢେଉ ନାଚୁଅଛି ଝଡ଼ ପରି
ଅଂଧକାରେ ତାତି ଓ ତତେଇ ।''
ଏ ରାତିର ଆକାଶରେ ଏତେ ତାରା ! ଏତେ ରାତି ! ଏତେ ନିର୍ଜ୍ଜନତା !
ପିଙ୍ଗଳାର ଏତେ ଦେହ ! ଏତେ ଜ୍ୱାଳା ! ଏତେ ଆତୁରତା !
ଆକାଶ ବି କେତେ ଶୂନ୍ୟ ! କେତେ କଳା ! କେତେ ମୂର୍ତ୍ତିମନ୍ତ !

ପିଙ୍ଗଳା କ୍ଷୁଧିତ କେତେ ! କ୍ଳାନ୍ତ କେତେ । କେତେ ଗ୍ଲାନି ଅଶ୍ରୁରେ ମଥିତ ।''
(ପିଙ୍ଗଳାର ସୂର୍ଯ୍ୟ)

ଇନ୍ଦ୍ରିୟୋତ୍ତର ଉପଲବ୍ଧିରେ ପିଙ୍ଗଳାର ଆଧ୍ୟାତ୍ମିକ ସତ୍ୟ ସହ ସାମିଲ ହେବାର ଭାବ କେତେ ଜୀବନ୍ତ ଏ ପଙ୍‌କ୍ତିରେ । ସୀତାକାନ୍ତ ମହାପାତ୍ରଙ୍କର 'ଅଷ୍ଟପଦୀ' ଓ 'ସମୁଦ୍ର' 'ଆରଦୃଶ୍ୟ' ଆଦି କାବ୍ୟ ଗ୍ରନ୍ଥରେ ଅନେକ କବିତାରେ ଏହି ଆଧ୍ୟାତ୍ମିକ ଅନ୍ୱେଷାବୋଧ ଓ ଜିଜ୍ଞାସା ବୋଧ ବଳିଷ୍ଠ ରୂପ ନେଇଛି ।

କବୟିତ୍ରୀ ପ୍ରତିଭା ଶତପଥୀ ସାଂପ୍ରତିକ ଜୀବନର କ୍ଳାନ୍ତି, ଅବସାଦ ଓ ବ୍ୟର୍ଥତା ଭିତରୁ ମୁକ୍ତି ଲାଗି ଆଧ୍ୟାତ୍ମିକ ସତ୍ତା ନିକଟରେ ଆତ୍ମ ନିବେଦନର ଆର୍ତ୍ତ ଅନେକ କବିତାରେ ଶୁଣାଯାଏ । ଏଠାରେ କେବଳ ଗୋଟିଏ ନମୁନା-

" ହେ ପରମ କାରୁଣିକ
ହେ ସକଳ ସ୍ୱସ୍ତିର ଆଧାର
ନିଶ୍ଚିତ ସହଯୋଗର ହାତ ମାତ୍ର ଥରଟେ ବଢାଅ
ଆକାଶ ପରିବ୍ୟାପ୍ତରୁ, ଅରଣ୍ୟରୁ
ପବନର ହିଲ୍ଲୋଳରୁ, ନଦୀଟିର ବହମାନତାରୁ ।'' (ପୌରୁଷରୁ ଉକ୍ତି)

ସୌଭାଗ୍ୟ ମିଶ୍ରଙ୍କର 'ଦ୍ୱା ସୁପର୍ଣ୍ଣା' କାବ୍ୟଗ୍ରନ୍ଥରେ ଉପନିଷଦିୟ ଚେତନାକୁ ଅନେକ କବିତାରେ ରୂପ ଦେଇଛନ୍ତି । ପ୍ରଭାକର ଶତପଥୀଙ୍କ 'ଦୃଶ୍ୟଟିଏ' କବିତାରେ ମଣିଷର ବଦ୍ଧ ଓ ବିମୁକ୍ତ ସତ୍ତାକୁ ଦୁଇଟି ପକ୍ଷୀ ରୂପରେ ବର୍ଣ୍ଣନା କରି ଲେଖିଛନ୍ତି -

"ବୃକ୍ଷଟିଏ । ଡ଼ାଳପତ୍ର ଫୁଲ ଫଳର କାୟା ବିସ୍ତାରିତ
ଦୁଇଟି ପକ୍ଷୀ ପାଖାପାଖି ଦୁଇଟି ଡ଼ାଳରେ
ବସି ରହିଛନ୍ତି ପ୍ରୀତିର ପୁଲକରେ ।" (ଦୃଶ୍ୟଟିଏ)

ମମତା ଦାସ ତାଙ୍କର "ନୈମିଷ୍ୟାରଣ୍ୟ'' କାବ୍ୟଗ୍ରନ୍ଥରେ ଆଧ୍ୟାତ୍ମିକ ଜିଜ୍ଞାସାବୋଧ ବଳିଷ୍ଠ ରୂପଲାଭ କରିଛି ।

ଆଧୁନିକ ଜୀବନ ଜିଜ୍ଞାସା ତଥା ବସ୍ତୁନିଷ୍ଠ ଅନୁଭବକୁ ସଫଳ ରୂପ ଦେବା ଲାଗି ଆଧୁନିକ କବି ପୁରାଣରୁ ଅନେକ 'ମିଥ୍' ସଂଗ୍ରହ କରି ତା'ରି ଜରିଆରେ ନିଜର ଅନୁଭବକୁ ପାଠକ ପ୍ରାଣରେ ସଂଚାରିତ କରିବା ପାଇଁ ଚେଷ୍ଟା କରିଛି । ପ୍ରେମର ଗଭୀରତକୁ ରୂପ ଦେବା ବେଳେ ପୌରାଣିକ ମିଥ୍ ଓ ଆଧ୍ୟାତ୍ମିକ ପ୍ରସଙ୍ଗର ସମନ୍ୱୟ ଭିତର ଦେଇ ପ୍ରେମର ଗଭୀରତାକୁ ରୂପ ଦେଇଛନ୍ତି । ସୀତାକାନ୍ତଙ୍କର କୁବ୍ଜା ପାଇଁ ଗୋଟିଏ ସଂଗୀତରୁ ଏକ ଉଦାହରଣ ନିଆଯାଇ ପାରେ -

ହେ ଅନାଦି ଘନ ଶ୍ୟମ
ଆଜି ତୋରି ପାଇଁ
ଦେହ ମନ ହୃଦୟ ଓ ଆତ୍ମାର ନିଦାଘ ଶେଷେ
ରୌଦ୍ରଜ୍ୱାଳ ନିପୀଡ଼ିତ ସମୟର ପଥ ଶେଷେ,
ସୀମିତ, ଅପୂର୍ଣ୍ଣ, ରୁଗ୍‌ଣ କୁବ୍‌ଜା ପ୍ରାଣ ମରୁ ଶେଷେ
ସ୍ୱପ୍ନ- କ୍ଷମା, କୁବ୍‌ଜା ଯେ
ଦେହ, ମନ, ହୃଦୟ ମଣ୍ଡାଇ
ବସି ଅଛି ପଥ ତୋର ଚାହିଁ ।" (କୁବ୍‌ଜା ପାଇଁ ଗୋଟିଏ ସଂଗୀତ- ସୀତାକାନ୍ତ)

ଆଜି ଅନେକ କବି ସଂପ୍ରତିକ ସମୟର ଆଧ୍ୟାତ୍ମିକ ଅବକ୍ଷୟର ଚିତ୍ର ନିଜ ନିଜ କବିତାରେ ପ୍ରଦାନ କରୁଛନ୍ତି । ଆଧୁନିକ କବିତାରେ ଯେଉଁ ଦୁର୍ବୋଧତା କିଛି ଦିନ ପୂର୍ବେ ଆସିଥିଲା ତାହା ଅନେକାଂଶରେ ଦୂରେଇ ଯାଇଛି । ପାଠକର ଅବଚେତନ ମନରେ ଆମର ପୁରାଣ ତଥା ଐତିହ୍ୟ ପ୍ରତି ଯେଉଁ ମୋହ ଅଛି ସେ ମୋହ ପ୍ରତି ଆଜିର କବି ସଚେତନ ହୋଇ ତା'ର କବିତାରେ ସାଂପ୍ରତିକ ଜୀବନରେ ଯନ୍ତ୍ରଣା ସହ ଆଧ୍ୟାତ୍ମିକ ଚେତନାର ସମନ୍ୱୟ କରିବାକୁ ଚେଷ୍ଟା କରୁଛି । ବସ୍ତୁ ମୋହ ଗ୍ରସ୍ତ ମଣିଷକୁ ଦିବ୍ୟ ଚେତନାରେ ଅନୁପ୍ରାଣିତ କରି ସମାଜର କଲ୍ୟାଣ ସାଧନ ଦିଗରେ ଅଙ୍ଗୀକାରବଦ୍ଧ ହେବା ପାଇଁ ଆଜିର କବି ଚେଷ୍ଟା କରୁଛି । ମଣିଷ ଭିତରେ ଥିବା ଦିବ୍ୟ ଚେତନାକୁ ଉଦ୍ରେକ କରିବା ପାଇଁ ପ୍ରତି ଯୁଗରେ କାଳଜୟୀ ଲେଖକମାନେ କାଳୋର୍ତ୍ତୀର୍ଣ୍ଣ ସାହିତ୍ୟ ରଚନା କରିଛନ୍ତି । ଆଜିର ବିଶୃଙ୍ଖଳିତ ସମାଜ ଜୀବନକୁ ଶୃଙ୍ଖଳିତ କରିବା ପାଇଁ ପାଠକ ପ୍ରାଣରେ ଏହି ଆଧ୍ୟାତ୍ମିକ ଚେତନା ବା ଦିବ୍ୟ ଚେତନାର ଉଦ୍ରେକ କରି ସାହିତ୍ୟ ରଚନା କରିବାର ଆବଶ୍ୟକତା ଯଥେଷ୍ଟ ଅଛି । ❀

ବରିଷ୍ଠ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଫକୀର ମୋହନ ମହାବିଦ୍ୟାଳୟ, ବାଲେଶ୍ୱର ।

# ଆଧୁନିକ ଓଡ଼ିଆ କବିତାରେ ଆଦିଭୌତିକ ଚେତନା

☆ ଡ଼ଃ ଲକ୍ଷ୍ମୀକାନ୍ତ ତ୍ରିପାଠୀ

ସବୁ ବିଦ୍ୟା ଠାରୁ ଆଧ୍ୟାତ୍ମ ବିଦ୍ୟାଟି ଅତ୍ୟନ୍ତ ଗୂଢ଼, ଜଟିଳ ଓ କଷ୍ଟସାଧ୍ୟ । ଦୁଃଶାସନ ଟାଣୁଥିବା ଦ୍ରୌପଦୀର ଶାଢ଼ୀ ପରି ଆଧ୍ୟାତ୍ମବିଦ୍ୟାକୁ ବିଦ୍ୱାନ ଟାଣି ଟାଣି ଥକିଯାଏ, ହେଲେ ବିଦ୍ୟା ସରେ ନାହିଁ । ଅସରନ୍ତି ଗଳ୍ପର ଶେଷ କଥନ ପରି ଆଧ୍ୟାତ୍ମ ଶାସ୍ତ୍ରର ଗଳ୍ପକୁ ପଣ୍ଡିତଟିଏ କହି କହି ତଣ୍ଡି ବସାଇ ଦିଏ, ହେଲେ ଗଳ୍ପ ସରେ ନାହିଁ । ଆକାଶ ପରି ତାହା ଏତେ ବିସ୍ତୃତ ଯେ ଆମେ ତା'ର ଆଦି ପାଉ ନା ଅନ୍ତ । ଯାହା ଦେଖୁ କେବଳ ତା'ର ମଝି ଅଂଶ । ପବିତ୍ର ଫଲ୍ଗୁ ନଦୀ ପରି ଯେତେଯେତେ ବାଲି ଖୋଳୁଥିବ, ସେତେସେତେ ମିଳୁଥିବ ନିର୍ମଳ ଓ ସ୍ୱଚ୍ଛ ନୀର । ଯା'ର ସ୍ୱାଦ ବି ଅମୃତ ଆଉ ସ୍ପର୍ଶ ବି ଅମୃତ ।

ଅପର ପକ୍ଷରେ ସେହି ଆଧ୍ୟାତ୍ମ ଶାସ୍ତ୍ରଟି ଆମ ଧୂଳିରେ- ମାଟିରେ, ଜୀବନରେ- ଚଳଣୀରେ, କଥାବାର୍ତ୍ତା-କର୍ମକାର୍ଯ୍ୟରେ, ରକ୍ତରେ ଓ ସଂପର୍କରେ, ସମାଜରେ- ସାମାଜିକତାରେ, ପ୍ରେମ ଓ ପ୍ରତ୍ୟୟରେ ଏମିତି ମିଶି ଯାଇଛି ଯେ, ଯେମିତି ସେ ନିଜେ ହିଁ ଗୋଟାପଣେ ଆମେ ତାକୁ ଅଲଗା କରି ଦେଖି ହେବନି କେଉଁକାଳେ । ଆଉ ଏମିତି କୌଣସି ଶାସ୍ତ୍ର ଦେଖିବାକୁ ମିଳେନାହିଁ, ଯାହା ଏକାଧାରରେ ନିଗୂଢ଼ ବି ନ ଗୂଢ଼ ବି । ପରିବ୍ୟାପ୍ତ ପରିଚିତ ବି । କଷ୍ଟଲବ୍ଧ ବି ସହଜ ବି ।

କିଛି ନ ଜାଣିବି ସବୁ ଜାଣିଲା ଭଳି ହଁ କରିବା ଭଙ୍ଗୀରେ ଆମେ ଆମ ମୁଣ୍ଡକୁ ନାଡୁଛେ । କିଛି ନ ବୁଝି ବି ସବୁ କିଛି ବୁଝି ପାରିବା ଭଳି ଆମେ ଆମ ଶଢକୁ ଖୋଜୁଛେ । କିଛି ନ ଦେଖି ବି ସବୁ କିଛି ଦେଖି ପାରିବା ଭଳି ଆମେ ଖାଲି ପଛରେ ଧାଇଁଛେ ।

ଆରେ, ଆତ୍ମା ବୋଲି କ'ଣ ? କେଉଁଠାରେ ଅବସ୍ଥାନ କରେ ? କେଉଁଠାରୁ ଆସିଥାଏ ? କେମିତିକା ରଂଗ ତା'ର ? କେମିତିକା ରୂପ ? ତା'ର କ'ଣ ବାସ୍ନା ଅଛି ? ତମ ଆମ ତାଙ୍କ ପରି ସିଏ କ'ଣ କଥା କହିପାରେ ? ଏସବୁର ଉତ୍ତର ଖୋଜିବା ହିଁ ଗୋଲକ ଧନ୍ଦା ଭିତରେ ପଶି ବାଟବଣା ହୋଇଯିବା । ଏଇ ସବୁ

ପ୍ରଶ୍ନର ଉତ୍ତରକୁ ଯିଏ ଖୋଜିବାରେ ଲାଗିଯାଏ. ଉତ୍ତର ପାଉ ବା ନ ପାଉ ଆମେ ତାକୁ ଆଧ୍ୟାତ୍ମବାଦୀ ବୋଲି କହି ପକାଉ । ଆଧ୍ୟାତ୍ମିକତା କଥାଟା ସେଇୟା । ଖାଲି ଆତ୍ମା ଓ ପରମାତ୍ମାଙ୍କ ସଂପର୍କୀୟ ଚିନ୍ତା ହିଁ ଆଧ୍ୟାତ୍ମିକତା । ଦୃଶ୍ୟମାନ ବସ୍ତୁ ସମୂହର ଊର୍ଦ୍ଧ୍ୱରେ ଅଦୃଶ୍ୟ ବସ୍ତୁକୁ ଦୃଷ୍ଟିପଥାରୁଢ଼ କରିବାର ଅନ୍ୟନାମ ହିଁ ଆଧ୍ୟାତ୍ମିକତା । ଏଇ କାର୍ଯ୍ୟଟି ଆମେ ମନକୁ ମନ ଚୁପ୍ ହୋଇ କରିପାରୁ ବା ଗୀତରେ ଗାଇପାରୁ ବା ନାଚରେ ଛନ୍ଦିପାରୁ ବା କବିତାରେ ସର୍ଜି ପାରୁ ।

ହରପ୍ରସାଦ ଦାସଙ୍କର 'ଖୁଣୀ ଅପ୍‌ସରା' କବିତା ଗ୍ରନ୍ଥରେ 'ଆତ୍ମା' ନାମରେ କବିତାଟିଏ ବି ରହିଛି । କବିତାଟି ଏହିପରି -

"ଆତ୍ମାକୁ ଆମେ କେହି ଦେଖିନେ
ମାଂସରେ ନାହିଁ
ମନସ୍ତାପରେ ନାହିଁ
ଭିଡ଼ଠେଲି ରାସ୍ତାରେ ଦୌଡୁଥିବା ନିଆଁ ଲିଭାଳି ଗାଡ଼ିରେ ନାହିଁ
ହାଡ଼ରେ ନାହିଁ
ହତ୍ୟାରେ ନାହିଁ
ଚିହ୍ନ ଟିକିଏ ବି ନାହିଁ ତା'ର କାକର ଭିଜା କଖାରୁ ଫୁଲର
ହଳଦିଆ ପାଉଁଶରେ ।
ଆତ୍ମା ଅଛି ପକ୍ଷୀ ଦେହରେ, ଲେଖାଅଛି ରୂପ କଥାରେ
ହେଲେ ପକ୍ଷୀ ଯେ ନାହିଁ ନୀଡ଼ରେ
ଏକଥା ଆମେ ଜାଣି ପାରୁନେ
ନୀଡ଼କୁ ଦେଖି,
କେଉଁ ଦୂର ଦେଶରୁ ତଡ଼ା ଖାଇ
ସୁକୁମାର ରାଜକୁମାର ଆସି ପହଂଚୁଛି ଆମ ସହରରେ
ନୀଡ଼ ହଲୁଚି ପବନରେ
ଆଉ କିଛି ଲେଖା ନାହିଁ ରୂପ କଥାରେ ।

ଯାହା ମୁଁ ଆଗେ ଆଗେ କହୁଥିଲି ହରପ୍ରସାଦ ଦାସଙ୍କ କବିତାରୁ ତାହା ଠିକ୍ ବୋଲି ପ୍ରମାଣିତ ହୋଇଗଲା । ଆମେ ଖୋଜି ଚାଲିଛୁ କିନ୍ତୁ ପାଉନାହୁଁ । ଯାହା ପାଉଛୁ ତାହା ସତକୁ ନୁହେଁ, ଅନୁମାନକୁ । ଅନୁମାନର ବି ସ୍ଥିରତା ନାହିଁ କି ପରିପୂର୍ଣ୍ଣତା ନାହିଁ ।

ଆମ ହୃଦୟ ଖାଲି ଗୋଟେ ବିଶ୍ୱାସରେ ଧାଇଁଛି । ବିଶ୍ୱାସ ସୃଷ୍ଟି ହେଉଛି ଭୟରୁ ନହେଲେ ଭକ୍ତିରୁ । ବିଶ୍ୱାସ ସୃଷ୍ଟି ହେଉଛି - 'ହଁ, ହେଇଥିବ' - ଏହିପରି ଏକ ପ୍ରତ୍ୟୟରୁ । ବିଶ୍ୱାସ ସୃଷ୍ଟି ହେବା ପାଇଁ ଗୋଟେ ବ୍ୟାକୁଳତାର ଆବଶ୍ୟକତା ରହିଛି । ବ୍ୟାକୁଳତା ଯାହାର ଯେତେ ଅଧିକ ତା'ର ଆତ୍ମା ପରମାତ୍ମାଙ୍କର ଅଧିକ ନିକଟତର । ବ୍ରହ୍ମୋତ୍ରୀ ମହାନ୍ତିଙ୍କର ପ୍ରାୟ ସମସ୍ତ କବିତାରେ ଆମେ ସେହି ବ୍ୟାକୁଳତାକୁ ଖୋଜି ପାଇଥାଉ । ଦିବ୍ୟ କୃପା ଲାଭରେ ଆଶାୟୀ ହୋଇ ତାଙ୍କ କବିତାରୁ ଝରି ଆସୁଥାଏ ଅମୃତମୟ ଶବ୍ଦମାନ । ତାଙ୍କ 'ସ୍ରୋତସ୍ୱତୀ' କବିତା ଗ୍ରନ୍ଥର ଗୋଟେ କବିତା ଏହିପରି

ତୁମେ କୃପା କଲେ
ଗୋଟିଏ ପଲକରେ ତ
ସବୁ ନିରାନନ୍ଦ ଦୂର ହୋଇଯିବ ମୋର ।
ମାତ୍ର ତୁମ କୃପା ପାଇବାକୁ
ଯେଉଁ ବ୍ୟାକୁଳତାର ପ୍ରୟୋଜନ
ତା କାହିଁ ମୋର ପ୍ରଭୁ !
ସମ୍ଭବତଃ ସେଥିଲାଗି
ତୁମରି କୃପା କଣିକାଏ ବି
ମୁଁ ଲାଭ କରିପାରୁନି । (୧୦୮ ପୃ ୪୭)

ଏବେ ଖାଲି ଚାରିଆଡ଼େ ଗୋଟିଏ କଥା ଚାଲିଛି ଯେ ଆଧ୍ୟାତ୍ମିକତା କ୍ରମଶଃ ହରି ଯାଉଛି ଆମ ସମାଜରୁ । କିନ୍ତୁ ଏ କଥାର ସତ୍ୟତା କେତେ ତାହା ଠିକ୍ ଭାବରେ ବୁଝି ହେଉନାହିଁ । ଅତି ବର୍ଷା ହେଲେ ଯେମିତି ନଈର ପାଣି କୂଳ ଲଂଘିଯାଏ, ସେମିତି ଈଶ୍ୱରଙ୍କ ପ୍ରତି ଭକ୍ତି ଓ ଧର୍ମପ୍ରତି ପ୍ରୀତି ତ ସମାଜର କୂଳ ଲଂଘନ କରିବାକୁ ବସିଲାଣି । ସାହି ଆଉ ଛକ ଜାଗା ମାନଙ୍କରେ ମୂର୍ତ୍ତିପୂଜା ଭକ୍ତିପୂତ ମାଇକି ଗର୍ଜନ । ଯେଉଁଠାକୁ ଅନାଇଲେ ସେହିଠାରେ ମନ୍ଦିର ନିର୍ମାଣ । ବହୁ ସ୍ଥାନରେ ସ୍ୱୟଂ ଭଗବାନ ଦେହ ଧାରଣ କରି ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇ ସାରିଲେଣି । ଯାହାକୁ ପଚାରିବ ପଚାର , ସେ କାହାରି ନା କାହାରି ଭକ୍ତ ନିହାତି ହୋଇଥିବ । ଏସବୁ ସତ୍ତ୍ୱେ ଆଧ୍ୟାତ୍ମିକତା ହରି ଯାଉଛି ବୋଲି ଆମେ କେମିତି କହିପାରିବା । ଆଧ୍ୟାତ୍ମିକତା ବଦଳି ନାହିଁ । ହୁଏତ ତା'ର ମାର୍ଗ ବଦଳି ଯାଇଛି । ଯିଏ କଠିନ, ଶିଳାବନ୍ଧୁର ଶ୍ରମ

ମାର୍ଗରେ ଗତି କରୁଥିଲା ସିଏ ସରଳ,କୁସୁମ କୋମଳ ଶ୍ରମଶୂନ୍ୟ ପଥରେ ପଥିକ ହୋଇ ଯାଇଛି । ଆଧ୍ୟାତ୍ମିକତାକୁ ଆପଣେଇ ନେବା କ୍ଷେତ୍ରରେ ସେଇ ଏକା ପ୍ରଶ୍ନ ଆଧୁନିକ ଓଡ଼ିଆ କବିତା ପ୍ରତି ଏବଂ ସେଇ ଏକା ଉତ୍ତର ବି ।

ଆଧୁନିକ ଓଡ଼ିଆ କବିର ହୃଦୟରେ ଈଶ୍ୱରଙ୍କ ପ୍ରତି ବିଦ୍ୱେଷ ଭାବ ହିଁ ନାହିଁ । ଆତ୍ମା ଓ ପରମାତ୍ମାର ମଧୁର ସଂପର୍କ ଏବଂ ସେମାନେ ପରସ୍ପର ପ୍ରତି ପ୍ରେମାନୁଗ ହେବାରେ ଆଧୁନିକ କବି ଆଶ୍ଚର୍ଯ୍ୟ ହୁଏ ନାହିଁ । ବାସ୍ତବତାର ସଂସାରରେ ଗୋଳେଇ ଘାଣ୍ଟି ହୋଇ ଯାଉଥିବା ବେଳେ ବି ଅବାସ୍ତବାତାକୁ ଅସ୍ୱୀକାର କରିପାରେ ନାହିଁ । ଭୌତିକତାର ନିଗଡ଼ ବନ୍ଧନରେ ବାନ୍ଧି ହୋଇ ଯାଉଥିବା ବେଳେ ବି ଆଦୌ ଭୌତିକତା ଠାରୁ ଦୂରରେ ରହିପାରେ ନାହିଁ । ସେଇଥି ପାଇଁତ ଆଧୁନିକ କବିତାକୁ ଚିପୁଡ଼ି ଆଣିଲେ ସେଥିରୁ ଯେଉଁ ରସ ବାହାରିବ ସେଥିରେ ଆଧ୍ୟାତ୍ମିକତାର ରସ ଥିବ ସର୍ବାଧିକ । କେତେବେଳେ ଆତ୍ମା ଓ ପରମାତ୍ମା ପାଇଁ. କେତେବେଳେ କାଳ ଓ ମହାକାଳ ପାଇଁ, କେତେବେଳେ ଖାଲି ଅସ୍ତି ସୂଚକ ବିଶ୍ୱାସଟିଏ ପାଇଁ ଆଧୁନିକ କବି ଲେଖିଚାଲେ ପ୍ରିୟତମ କବିତା ତା'ର । ଯେମିତି ଜନ୍ମ ଜନ୍ମାନ୍ତରରୁ ପାରି କରିବା ପାଇଁ 'ଭିତିରି ଚନ୍ଦନ' କବିତା ଗ୍ରନ୍ଥରେ କବି ହରିହର ମିଶ୍ର କହନ୍ତି -

ମହାବାହୁ ! ପ୍ରାର୍ଥନା ଏ ବାହୁଡ଼ା ବେଳର
ପାରିକର ଏ ଦୁସ୍ତର ଜନ୍ମ ଜନ୍ମାନ୍ତର
ତୁମରି ବୁକୁରେ ଥାଏ
ମହକ ମୁଁ ଖେଳୁଥାଏ
ଦୀର୍ଘ ମନ୍ୱନ୍ତର ଡ଼େଇଁ
କାଳ କାଳାନ୍ତର । (ପ୍ରାର୍ଥନା ବାହୁଡ଼ା ବେଳର ପୃଷ୍ଠା- ୧୦୦)

କବି ହୋଇଥିବ, ମାତ୍ର ଗଣେଶ ବା ସରସ୍ୱତୀଙ୍କୁ ମାନିବ ନାହିଁ, ଏମିତି କଥା ଶୁଣାଯାଇ ନାହିଁ ମୋର କର୍ଣ୍ଣଗହ୍ୱରରେ । କାଗଜ ଖଣ୍ଡେ ବା କଲମଟାରେ ଆପଣାର ଗୋଡ଼ ବାଜିଗଲେ ତାକୁ ମଥାରେ ଲଗାଇ ଜୁହାର କରେ । ଲେଖୁ ଲେଖୁ ପଦ ଅଟକି ଗଲେ ଚିନ୍ତା କରେ ସେହି ପାରଗ ଅଦୃଶ୍ୟ ଶକ୍ତିକୁ । ଏଇଟା ହେଉଛି ଲେଖିବାର ପୂର୍ବାବସ୍ଥା । ତା'ପରେ ସେ ଈଶ୍ୱରଙ୍କ ବିରୁଦ୍ଧରେ ଲେଖୁ ବା ସପକ୍ଷରେ । ତା' ପରେ ସେ ତା'ର ଆତ୍ମାକୁ ବାରମ୍ବାର ଦେହ ଧାରଣ କରିବାକୁ ଅନୁରୋଧ କରୁ ବା ଇଚ୍ଛା ପ୍ରକାଶ କରୁ ଶୂନ୍ୟରେ ଲୀନ ହୋଇଯିବା ପାଇଁ । ଯେମିତି ଶୂନ୍ୟରେ

ମିଳାଇ ଯିବାର କଳ୍ପନା କରନ୍ତି କବି ଶୁଭେନ୍ଦୁ ମୋହନ ଦାସ ତାଙ୍କର 'ଶବ୍ଦ ହଜିଯାଏ' କବିତା ଗ୍ରନ୍ଥରେ କବିତାଂଶଟି ଏହିପରି -

ମୋର ଖାଲି ଗୋଟିଏ ପ୍ରାର୍ଥନା
ନିଶ୍ଚିହ୍ନ ହୁଏ ମୁଁ ଏ ଗ୍ରହରୁ - ଅଜଣା, ଅଶୁଣା
ତା ପରେ- ନ ଆସୁ କିନ୍ତୁ
ଅଶ୍ରୁର ପ୍ରଣାମି କିମ୍ବା 'ଆହା'ର ସଲାମି
ମୋର ମୃତ୍ୟୁପରେ
ମୋର କବର ଉପରେ । (ଈଶ୍ୱରଙ୍କ ପାଇଁ ଚୂର୍ଣ୍ଣ ପଦାବଳୀ)

ମୁଁ ଆଗରୁ କହିଥିଲି ଯେ, ଜଣେ ଆଧ୍ୟାତ୍ମବାଦୀ ବ୍ୟକ୍ତି ଅନ୍ୟ ଜଣେ ଆଧ୍ୟାତ୍ମବାଦୀର ବିପରିତ ଚିନ୍ତା ବି କରିପାରେ ; ଅର୍ଥାତ୍ ଜଣେ ତା'ର ଆତ୍ମାକୁ ପରମାତ୍ମାଙ୍କ ସହିତ ମିଳାଇ ଦେଇ ପୁନର୍ଜନ୍ମ ଗ୍ରହଣ ନ କରିବାର ଇଚ୍ଛା ପ୍ରକାଶ କରିପାରେ । ଯେମିତି କଲେ ଶୁଭେନ୍ଦୁ ମୋହନ ଦାସ । ଅନ୍ୟ ଜଣେ ଈଶ୍ୱରଙ୍କ ପାଦ ତଳେ ଅନବରତ ଭକ୍ତି ପ୍ରଣିପାତ କରିବା ପାଇଁ ବାରମ୍ବାର ଜନ୍ମ ଗ୍ରହଣ କରିବାକୁ ଧ୍ୟେୟ ମନେକରି ପାରେ । 'ସର୍ବ ଦେବଂ ନମସ୍କାରଂ କେଶବଂ ପ୍ରତି ଗଚ୍ଛତି' ପରି ମତି ଭିନ୍ନ ଭିନ୍ନ ହୋଇପାରେ କିନ୍ତୁ ଗତି ହିଁ ଏକ। ହୁସେନ୍ ରବି ଗାନ୍ଧୀ ତାଙ୍କର 'ସିଂହାସନ ଭାଙ୍ଗିବାର କାର୍ଯ୍ୟକ୍ରମ' ଗ୍ରନ୍ଥରେ ଜୀବନ ଚକ୍ର ଓ ଆତ୍ମା ସଂପର୍କରେ ଏ ପରି ଲେଖିଛନ୍ତି -

କାହାର ଏ ଆଗ୍ୟାଁ ?
କାହିଁକି ତୁ ଏଠାରେ ଅବା
କି ପ୍ରକାରେ ପ୍ରବେଶ ହୋଇଲୁ ?
କିଙ୍କର କି ପ୍ରଶ୍ନି ପାରେ
ପ୍ରଭୁର ଆଗ୍ୟାଁକୁ ?
ସର୍ଜ୍ଜି ମୋତେ ପଠାଇଛି
ଅନ୍ଧକାରେ ରହିଥିବା
ଜୀବର ନିକଟେ । ଏବଂ ମୋତେ
ଆଦେଶ ହୋଇଛି
ଏଇଠାରେ ତୋ ଭିତରେ

ଆବିର୍ଭାବ ଲଭି
ତୋର ସତ୍ତା ସହ ମୁଁ ବିଦ୍ୟମାନ
ଅନ୍ୟାଦେଶ ଯାଏ । (ଜୀବନ ଚକ୍ର : ଆତ୍ମା)

ଜୀବନ ଚକ୍ର ହିଁ ଆଧ୍ୟାତ୍ମବିଦ୍ୟାର ପ୍ରମୁଖ ବିଭାଗ । ନାଗର ଦୋଳାରେ ବସିଯିବା କ୍ଷଣି ସେ ଆମକୁ ନେଇ ଯାଉଛି ଉପରକୁ ଓ କିଛି ସମୟ ପରେ ପୁଣି ଛାଡ଼ି ଦେଉଛି, ଆମେ ଯେଉଁ ସ୍ଥାନରେ ଥିଲୁ ସେହି ସ୍ଥାନରେ । ବାଷ୍ପୀୟ ଶକଟରେ ବସିଯିବା କ୍ଷଣି ସେ ଆମକୁ ବୋହି ନେଇଯାଉଛି ଓ ଓହ୍ଲାଇ ଦେଉଛି କେଉଁ ଏକ ଷ୍ଟେସନରେ । ଆମେ ପୁଣି ବସୁଛୁ ଓ ପୁଣି ଓହ୍ଲାଇ ଯାଉଛୁ । ପାଣି ବାଷ୍ପ ହୋଇ ଉଠି ଯାଉଛି ଆକାଶକୁ ଓ ମେଘ ପୁଣି ପାଣି ହୋଇ ଉଡ଼ି ଯାଉଛି ଏହି ପୃଥିବୀରେ । ଠିକ୍ ସେହିପରି ଆମର ଆତ୍ମା । ତା'ର ଘର ବୋଲି କିଛି ନାହିଁ । ଶୂନ୍ୟ ଭିତରେ କେଉଁଠି ଟିକିଏ ତା'ର ସ୍ଥାୟୀ ସ୍ଥାନ ରହିଛି । ସେତିକି ସମୟ ସେ ତା' ନିଜ ସ୍ଥାନରେ ରହୁ ନାହିଁ । ଆଧ୍ୟାତ୍ମ ଶାସ୍ତ୍ରଟି ଏହି ତତ୍ତ୍ୱ ସବୁ ଆମକୁ ଅଜାଡ଼ି ଦେଇ ଚାଲିଛି । ସେହି ଶାସ୍ତ୍ରରୁ ବିନ୍ଦୁଏ ବିନ୍ଦୁଏ ଧରି ଆମର କବିମାନେ ସିନ୍ଧୁଏ ସିନ୍ଧୁଏ କଳ୍ପନା କରି ଚାଲିଛନ୍ତି । ସେ ସବୁ କଳ୍ପନା ଠିକ୍ ବା ବେଠିକ୍ ତାହା ତତ୍ତ୍ୱଦର୍ଶୀମାନେ ବିଚାର କରିବେ । କିନ୍ତୁ କବି ମାନେ ଯେ ଈଶ୍ୱରଙ୍କ ପ୍ରତି ଆସକ୍ତ ସେଇଟା ହିଁ ଆମ ପାଇଁ ବଡ଼ କଥା । ଏଇ ଭାବଧାରାକୁ ନେଇ ଦୁଇଟି କବିତାଂଶକୁ ଉଦାହରଣ ଭାବରେ ଆମେ ଏଠାରେ ପ୍ରଦାନ କରିବା । ଗୋଟିଏ ବୟୋଜ୍ୟେଷ୍ଠ କବି ରମାକାନ୍ତ ରଥଙ୍କ 'ଶ୍ରୀରାଧା' ଗ୍ରନ୍ଥରୁ ଓ ଅନ୍ୟ ଗୋଟିକ ବୟୋକନିଷ୍ଠ କବି ଭାଗିରଥୀ ମିଶ୍ରଙ୍କ ଆକାଶ ଖୋଜା ଗ୍ରନ୍ଥରୁ ।

ମୁଁ ଜାଣେ ଫେରିବି ଆଜି ରାତି ସରିଗଲେ
ପୁଣି ମୋ ଘରକୁ ଆଉ ପୁଣି ମୋ ମୃତ୍ୟୁକୁ
ମୁଁ କିନ୍ତୁ ଆସିବି କାଲି ରାତିରେ ତା ପରେ
ପ୍ରତ୍ୟେକ ରାତିରେ ଫେରି ତମରି ପାଖକୁ
ଆସୁଥିବି ଯେ ପର୍ଯ୍ୟନ୍ତ ମୋ ବିବସ୍ତ୍ର ଦେହ
ଆଉଜାଇ ନେଇ ନାହିଁ ମୋ ଜୀବନ କାଳ
ଓ ତମ ଜୀବନ କାଳ ଅନ୍ତ ହେବା ପରେ
ଯେ ପର୍ଯ୍ୟନ୍ତ ମୁଁ ନିଶ୍ଚିହ୍ନ ହୋଇଯାଇ ନାହିଁ
ପୂରାପୂରି ତମ ଶୂନ୍ୟତାରେ । ( ରାଧାନାଥ ରଥଙ୍କ ଶ୍ରୀରାଧା (୫)

ପ୍ରତି ପଳର ଆରମ୍ଭରେ
ଶେଷ ହୋଇଯିବାର ଆଶଙ୍କା ଘାରେ ଯେତେବେଳେ
ପୁଣି ମାଟି ପୁଣି ଆକାଶ ପୁଣି ସଂଜ ପୁଣି ସକାଳ
ପୁଣି ଡ଼ାଳ ପୁଣି ବସା ପୁଣି ଡ଼େଣା ଝାଡ଼ି ଉଡ଼ିଯିବାର ପ୍ରୟାସରେ
ଆମର ଆରମ୍ଭମୟ ପ୍ରତ୍ୟେକ ମୁହୂର୍ତ୍ତ
ଆକାଶ ପରେ ଆକାଶ ପରେ ଆକାଶ ଯେମିତି
ଅନ୍ତହୀନ ଆକାଶ ଖୋଜାରେ
ପାଇବା ନ ପାଇବା ପାଇ ହଜାଇବା  ହଜାଇ ଖୋଜିବାରେ
ସବୁଠି ସବୁବେଳେ ଅସୀମ ଆକାଶ ଆମର ପ୍ରିୟ  ସହଚର
ତଥାପି ସରି  ଯାଇନି ନିଜ ନିଜର
ନିଆରା ଆକାଶ ଖୋଜା ଆମର ।

(ଭାଗିରଥୀ ମିଶ୍ରଙ୍କ ଆକାଶ ଖୋଜା କବିତା ଗ୍ରନ୍ଥର ଯେ ଯାହାର ଦିଗନ୍ତ ନେଇ କବିତାଂଶ)

ନିଛକ ପ୍ରବନ୍ଧଟିଏ ରଚନା କରିବା ପାଇଁ ଆଧୁନିକ କବିତାକୁ ଖୋଜି ଲୋଡ଼ି ଓ ଘାଣ୍ଟି ଚକଟି ଏ ତତ୍ତ୍ୱମାନ ପ୍ରଦାନ କରାଯାଉ ନାହିଁ । ଏମିତି ଓଲଟାଉ ଓଲଟାଉ ଯେଉଁ ଯେଉଁ ଆଧୁନିକ କବିତାମାନ ମୋର ପଠନ ବଳୟ ଭିତରକୁ ଆସିଛନ୍ତି ସବୁଥିରେ ମୁଁ ଅନୁଭବ କରି ପାରିଛି ଈଶ୍ୱରଙ୍କର ସତ୍ତାକୁ ଉପଲବ୍ଧି କିରପାରୁଥିବା ବାକ୍ୟାଂଶ ମାନ । ଆକାଶକୁ ଢାଙ୍କି ଥିବା ମେଘ ଖଣ୍ଡପରି କେଉଁ କବିତାକୁ ଢାଙ୍କି ରଖିଛି ଆଧିଭୌତିକତାର ଗୂଢ ତତ୍ତ୍ୱ ତ ଅନ୍ତଃସଲୀଳା ଫଲ୍ଗୁ ପରି କେଉଁ କବିତାରେ ଆତ୍ମାକୁ ଆବୋରି ବସିଛି ଐଶ୍ୱରୀୟ ତଲ୍ଲୀନତା । ସୂର୍ଯ୍ୟମୁଖୀ ଫୁଲ ସୂର୍ଯ୍ୟଙ୍କ ଆଡ଼କୁ ମୁହଁ କରି ପ୍ରସ୍ଫୁଟିତ ହେବା ପରି କେଉଁ କବିତାର ବକ୍ତବ୍ୟ ଧାବିତ ହୋଇଛି ଆଧ୍ୟାତ୍ମିକତାର ଚିନ୍ତନ ଦିଗକୁ ତ ମଳୟ ପବନ ମଣିଷକୁ ବିଭୋର କରି ଦେବା ପରି କେଉଁ କବିତା ମଧ୍ୟରେ କବି ନିଜେ ହିଁ ବିଭୋର ହୋଇ ଯାଇଛି ଈଶ୍ୱରଙ୍କୁ ପ୍ରାର୍ଥନା କରିବାର ଶବ୍ଦାବଳୀରେ । ଈଶ୍ୱରଙ୍କର ସତ୍ତା ଓ ପ୍ରାର୍ଥନାର ଶବ୍ଦାବଳୀ ବହନ କରୁଥିବା ଛଅ ସାତୋଟି ଉଦାହରଣ ଏଠାରେ ପ୍ରଦାନ କରିବାକୁ ଇଚ୍ଛା ହେଉଛି । ତାହା ଏହିପରି -

ଶରତ ଚନ୍ଦ୍ର ପ୍ରଧାନଙ୍କ 'ବିତ୍ରିଶ ସିଂହାସନ' ଗ୍ରନ୍ଥ :

ବଳୀୟାର ଭୁଜେ
ଗଲେ ଶରଣ,
ଅନର୍ଥରେ ଅର୍ଥ
ଅମନ୍ତରେ ମନ୍ତ୍ର
ଶରୀର ପାତନ
ହୋଇଯିବା ନତୁବା
କାର୍ଯ୍ୟ ସାଧନ ।
ଶାସନ ଆସନ
ଯେଉଁଠି ଯେତେ
ବଳୀୟାର ଭୁଜ
କରଣୀ ମୋତେ । (ନ.ଙ୍ଖ, ପୃ. ୧୩୩)

ନୀଳମଣି ପରିଡ଼ାଙ୍କ 'ଚତୁର୍ଥ ପଦ' ଗ୍ରନ୍ଥ :

ମଧ୍ୟମ ପାଣ୍ଡବ ପାର୍ଥ
ଫାଲ୍ଗୁନି, ଅର୍ଜୁନ ଦେଖିଲେ
ମହାଯୋଗେଶ୍ୱର ହରିଙ୍କର ଚତୁର୍ଦ୍ଦିଗେ
ଅନଳ ଜଳୁଛି ମୁଖ, ଗ୍ରାସ କରେ ଲୋକଗଣ
ମହାଯୋଗେଶ୍ୱର ହରି
ଏତଦ୍ୱାରା ସୂଚାଇ ଦିଅନ୍ତି
ଏ ଜଗତ୍ ତାଙ୍କ ତୀବ୍ର ତେଜ ଦ୍ୱାରା ସମୃଦ୍ଧ ଓ ପରିବ୍ୟାପ୍ତ
ଆଲୋକ ବିଭୂଷିତ ନାନାଦି ରଂଗର
ସେ ମହାତ୍ମା , ସେ ଅନନ୍ତ
ସେ କେଶବ ଜଗତ୍ ପିତା, ଜଗତ୍ ପ୍ରଭୁ
ଆଦିକର୍ତ୍ତା, ବ୍ରହ୍ମାଙ୍କ ସୃଜନ କର୍ତ୍ତା
ସତ୍ ଅସତ୍‌ରୁ ଅତୀତ ଯେ ଆଲୋକଗାମୀ
ଅନନ୍ତ ଶୟନ ଆଦି ପିତାମାତା ।
(ଅର୍ଜୁନଙ୍କ ବିଶ୍ୱରୂପ ଦର୍ଶନ ପୃ. ୯୪)

ତୁହିନାଂଶୁ ରଥଙ୍କ 'ନାଭି ନକ୍ଷତ୍ର' ଗ୍ରନ୍ଥ :

ଯେଉଁଠି ତୁମେ ମଳୟ ପରି
ବହିବା ଆରମ୍ଭ କରିବ
ଝରଣା ପରି ଲମ୍ଫ ଦେବ
ସାରୁପତ୍ରର ପାଣି ପରି
ନିରବରେ ଖସି ଯିବାକୁ ଚାହିଁବ
ଦେଖିବ ଆଗରେ କାନ୍ଥଟିଏ ।
କିଛି ସଂଜ୍ଞା ନାହିଁ
ଶେଷ ଅନୁଭୂତି ନାହିଁ
କାନ୍ଥ ସଂପର୍କରେ
ସେଇଠି ରହି , ସେଇଠି ନଥାଇ
ଇନ୍ଦ୍ରଜିତ୍ ସେ ମାୟା ରଚନାରେ । (ଶତ୍ରୁ ପୃ. ୫୨)

ବିପିନ୍ ନାୟକଙ୍କର 'ପବନର ଝୋଟି' ଗ୍ରନ୍ଥ :

ମୁଁ ଯେମିତି ଆଶ୍ଚର୍ଯ୍ୟ ବିଭୋର
ତୁ କେମିତି ଯେ
ପରିପୂର୍ଣ୍ଣ କରି ଦେଉ
ପରାଗ ଓ ପ୍ରାର୍ଥନାରେ
ମୋ ଆତ୍ମାର ବାଉନ ଭଣ୍ଡାର । (ମାଟି - ପୃ ୫୨)

ସେନାପତି ପ୍ରଦ୍ୟୁମ୍ନ କେଶରୀଙ୍କ 'ଧୂଳିବେଶ' ଗ୍ରନ୍ଥ :

ମୋତେ କର ଜଗନ୍ନାଥ !
ମୀରାର ମହିମ୍ନ ଦୃଷ୍ଟି, ଅସବର୍ଣ୍ଣା କୁବୁଜାର ଲୋଳିତ ଅଙ୍ଗୁଷ୍ଠି
ମୋତେ କର ଦାରୁଣ ବୈଧବ୍ୟର
ଲିଭନ୍ତ ଗୋଧୂଳିଗାର
ଅସହାୟା ଧର୍ଷିତାର କ୍ଷତ ଆଉ କ୍ଷତିର ସମଷ୍ଟି
ଆତ୍ମାର ଚାରିକାନ୍ଥେ ଝୁଲୁଛନ୍ତି ଯେତେ କ୍ଳାନ୍ତ
ଯେତେ ବିଫଳତା

ଯେତିକି ଅଳନ୍ଧୁ ମୋତେ ସ୍ମରଣେଇ ଦେଉଛନ୍ତି
ମଲା ଦିନମାନଙ୍କର ସ୍ୱପ୍ନିଳ ଶୂନ୍ୟତା
ସେ କ୍ଷଣିକ ସୁଖର ମୁହୂର୍ତ୍ତଟିଏ
ମୋ ଦେହରେ ପର ଖଂଜେ,ଚଂ ଚୁ ଯୋଡ଼େ
ବହୁବର୍ଣ୍ଣା ରଂଗ ମାଖେ
କୁନି କୁନି ଆଖି ଯୋଡ଼େ ଦେଇ
ପ୍ରତ୍ୟୟର ଔଜ୍ଜଲ୍ୟ ପରଖେ । ( ପାହାଚ ତଳର ଘାସ- ପୃ.୪୪)
ସମରେନ୍ଦ୍ର ନାଥ ମହାପାତ୍ରଙ୍କ "ଉତ୍ତୀର୍ଣ୍ଣ ଅବତୀର୍ଣ୍ଣ " ଗ୍ରନ୍ଥ :
ମନ୍ତ୍ର ଉଚ୍ଚାରିଲେ ମୁଁ ଗଳି ପଡ଼ିବ
ଖଣ୍ଡ ଖଣ୍ଡ ଆକାଶ
ଲକ୍ଷ୍ୟ ଭେଦିଲେ ମୁଁ
ଟଳି ପଡ଼ିବ ମେଘ ଓ ବତାସ
ଇନ୍ଦ୍ରିୟମାନେ ମୋର
ସଦ୍ୟ ମୃଗୟାରୁ ଫେରନ୍ତା ଈଶ୍ୱର
ମୋତେ ଆଉ ବିଦୀର୍ଣ୍ଣ କରିବ କୋଉ ଅହଂକାର ?
ମୁଁ ତ ଖୋଲୁଚି ଏବେ
ଶ୍ୱେତ ଆତ୍ମାର ଦୁଆର
ମୌନ ପାହାଡ଼ ପରି ତପସ୍ୟାରେ ଚିରକାଳ । (ତପସ୍ୟାରେ ଚିରକାଳ)
ପ୍ରସନ୍ନ ପାଟଶାଣୀଙ୍କ 'ନଈ ସେପାରି ପଠା' ଗ୍ରନ୍ଥ :
ତୁମେ ବାଲିରେ ବ୍ରହ୍ମ
ସମୁଦ୍ରରେ ବିଭୂତି
ଆକାଶରେ ନାଦ
ତମର ଦୁଇ ଆଖି ବୁଜିଲେ ଅତୀତ
ଖୋଲିଲେ ବର୍ତ୍ତମାନ
ପରଂବ୍ରହ୍ମ ହୋଇ
ଅଶେଷ ଜଗତଙ୍କୁ ହାତ ଠାରି କଲ୍ୟାଣିରେ ଡ଼ାକ
କେହି ବଡ଼ ନାହିଁ କାହାଠାରୁ
ମୁଁ ଅତୀତ ବର୍ତ୍ତମାନ
ଭବିଷ୍ୟତରେ ରହିବ ଚିରବ୍ରହ୍ମ ସନାତନ

ଆତ୍ମା ଯେମିତି ଦେହର ସବୁ ଅଂଶରେ ବିଦ୍ୟମାନ, ଈଶ୍ୱରଙ୍କର ସତ୍ତା ବି ସେମିତି ଆଧୁନିକ କବିତାର ଶବ୍ଦେ ଶବ୍ଦେବିଦ୍ୟମାନ । ସବୁକୁ ଖୋଜି ଆଣି ଆପଣଙ୍କ ସାମ୍ନାରେ ଥୋଇବା ପଙ୍ଗୁଟିଏ ଗିରି ଲଙ୍ଘନ କରିବା ସହିତ ସମାନ ହେବ । ଆଧୁନିକ କବିତାରେ ଯେ ଆଧାତ୍ମିକତା ରହିଛି ଏହା ହିଁ ଜାଣିବା ଆମର ମୁଖ୍ୟ କଥା । ଶାଢ଼ୀ ଦୋକାନରେ ଆଗରେ ଟଙ୍ଗା ଯାଇଥିବା ଶାଢୀ ପରି କେତେକଙ୍କୁ ଏଠାରେ ଉଦ୍ଧାର କଲି । ଦୋକାନ ଭିତରେ ଗଂଗାଧର କି ପଂଚାନନ, ସୂର୍ଯ୍ୟ ବା ଜୟନ୍ତ ସଜ୍ଜିତ ହୋଇ ଆପଣଙ୍କର କିଣିବାର ଆଗ୍ରହକୁ ଅପେକ୍ଷା କରି ବସିଛନ୍ତି ।

ଏହାବାଦ୍ ଆମେ ଆଉ ଗୋଟିଏ କଥା ମଧ୍ୟ ଆଲୋଚନା କରିବା । ତାହା ହେଲା ଏହି ଆଧ୍ୟାତ୍ମିକତା ପରିପୂର୍ଣ୍ଣ କବିତାମାନ ଜନ ଜୀବନ ଉପରେ କୌଣସି ପ୍ରଭାବ ପକାଉଛି ନା ନାହିଁ ? ଏହା ଠିକ୍ ଯେ ଏହି କବିତାମାନ ଚୋରକୁ ସାଧୁରେ ବା ମିଥ୍ୟାଚାରୀକୁ ସତ୍ୟବାଦୀରେ ରୂପାନ୍ତରିତ କରୁନାହିଁ । ଏହି କବିତା ମାଧ୍ୟମରେ ଯୁଦ୍ଧଖୋର ଶାନ୍ତିପ୍ରିୟ ହୋଇଯାଉନାହିଁ ବା ଦୁଃଖରେ ଭାଙ୍ଗି ପଡ଼ିଥିବା ମଣିଷ ହଠାତ୍ ସୁଖରେ ଅଥୟ ହୋଇ ପଡୁନାହିଁ ।

ଜନଜୀବନ ଉପରେ ତତ୍‌କ୍ଷଣାତ୍ ବା ତତ୍‌କାଳୀକ ପ୍ରଭାବ ଠାରୁ ଏହି କବିତା ସମୂହର ହୁଏତ ଦୀର୍ଘସୂତ୍ରୀ ପ୍ରଭାବ ରହିଛି । ପ୍ରଭଂଜନ ପରି ନୁହେଁ ବରଂ ଚଇତ୍ରର ପବନ ପରି ଏହା ବ୍ୟକ୍ତି ସତ୍ତାରେ ସଂଚରି ଯାଉଛି ଧୀରେ ଧୀରେ ।

ଆସ୍ତେ ଆସ୍ତେ ଖୋଲି ଯାଉଥିବା ବେଣୀ ପରି, ସମତଳ ଉପରେ ମେଲି ଯାଉଥିବା ପାଣି ପରି, ଦ୍ୱିତୀୟା ତିଥିର ଜ୍ୟୋତ୍ସ୍ନା ପରି କବିତା ଚାହେଁ ଜନ ଜୀବନକୁ ପ୍ରଭାବିତ କରିବାକୁ । ଜନଜୀବନ ସହିତ ସେ ମିଶିବାକୁ ଚେଷ୍ଟା କରେ କ୍ଷୀର ସଂଗରେ ପାଣି ମିଶିବା ପରି । କେବେ କେବେ ସଫଳ ହୁଏ କେବେ କେବେ ବିଫଳ ବି ।

ଆଧ୍ୟାତ୍ମିକତା ବୋହି ଯାଉଥିବା ନଈଟିଏ । ଅନ୍ୟ ସବୁ ପରି ଆଧୁନିକ କବିତା ବି ସେ ନଈର ଆଧାର ଲମ୍ବି ଯାଇଥିବା ମାଟି । ଆମ ତୃଷାତୁର ମଣିଷ ମାନଙ୍କର ତୃଷା ନିବାରଣ ପାଇଁ ନଈଟି ବିତରଣ କରି ଚାଲିଛି ତା'ର ସ୍ୱଚ୍ଛ ଜଳ । କାହାର ତୃଷା ନିବାରଣ କରି ପାରୁଛି ଏ ନଈର ସ୍ୱଚ୍ଛ ସ୍ନିଗ୍ଧ ଜଳ । କିଏ ଅବା ଜଳ ନ ପାଇ କି ତୃଷାର୍ତ୍ତ ହୋଇ ରହୁଛି ଆହା ! ଚିରକାଳ । ॐ

ଗବେଷକ,
ଓଡ଼ିଆ ଭାଷା ଓ ସାହିତ୍ୟ, ବାଲେଶ୍ୱର ।

# ଆଧ୍ୟାତ୍ମିକତା

☆ ଡଃ ମନ୍ମଥ କୁମାର ପ୍ରଧାନ

ଆତ୍ମା ସମନ୍ଧୀୟ ଜ୍ଞାନକୁ ଆଧ୍ୟାତ୍ମିକ ଜ୍ଞାନ କୁହାଯାଏ । ଜୀବାତ୍ମାର ଶାରିରୀକ ଓ ମାନସିକ କ୍ରିୟା ପ୍ରକ୍ରିୟାରୁ ଆଧ୍ୟାତ୍ମିକ ଶବ୍ଦର ବ୍ୟୁତ୍ପତ୍ତି ହୋଇପାରେ । ଯାହା ପରମେଶ୍ୱରଙ୍କୁ ନେଇ ସୃଷ୍ଟି ହୋଇଥାଏ ତାହା ଆଧ୍ୟାତ୍ମିକ । ବିଶ୍ୱ ବ୍ରହ୍ମାଣ୍ଡଏହି ଐଶୀ ଶକ୍ତି ଦ୍ୱାରା ହିଁ ପରିଚାଳିତ । ମାତ୍ର ଜଡ଼ବାଦୀ ବୈଜ୍ଞାନିକ ମାନେ ଯୁକ୍ତି କରନ୍ତି ଯେ ଅଣୁ ପରମାଣୁର ଆକସ୍ମିକ ମିଳନରୁ ଏ ଜଗତ ସୃଷ୍ଟି ହୋଇଛି । ଆଧ୍ୟାତ୍ମବାଦୀ ମାନଙ୍କ ମତରେ 'ବ୍ରହ୍ମ' ହେଉଛନ୍ତି ସର୍ବ ଶକ୍ତିମାନ, ଅନନ୍ତ, ଅଦ୍ୱିତୀୟ , ଅଖଣ୍ଡ - ସଚ୍ଚିଦାନନ୍ଦ । ଉପନିଷଦରେ ଏହି ବ୍ରହ୍ମ ସଂପର୍କରେ ସୂଚାଇ ଦିଆଯାଇଛି -

'ଯତୋ ବା ଇମାନି ଭୂତାନି ଜାୟନ୍ତେ,
ଯେନ ଜାଣନି ଜୀବନ୍ତି ଯତ୍ ପ୍ରଯନ୍ତ୍ୟଭି ସଂବିଶନ୍ତି ତତ୍ ବ୍ରହ୍ମଃ ।'

(ଯାହାଙ୍କ ଠାରୁ ଏହି ଅଖିଳ ଭୂତବର୍ଗ ଉତ୍ପନ୍ନ ହୁଏ ଓ ଯାହାଙ୍କ ଦ୍ୱାରା ବର୍ଦ୍ଧିତ ହୁଏ ପୁଣି ବିନାଶ କାଳରେ ଯାହାଙ୍କ ଠାରେ ବିଲୀନ ହୁଏ ତାହା ହିଁ ବ୍ରହ୍ମ) ।

ଏହି ବ୍ରହ୍ମ ସୃଷ୍ଟିର ସର୍ବତ୍ର ବିଦ୍ୟମାନ -

'ପୂର୍ଣ୍ଣମଦଃ ପୂର୍ଣ୍ଣମିଦଃ ପୂର୍ଣ୍ଣାତ୍ ପୂର୍ଣ୍ଣ ମୂଦୁଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।'(କଠୋପନିଷଦ)

(ସେହି ବର୍ହିଜଗତ , ଯାହା ଇନ୍ଦ୍ରିୟ ଅଗୋଚର ତାହା ବ୍ରହ୍ମରେ ପରିପୂର୍ଣ୍ଣ, ସେହି ଅନ୍ତର୍ଜଗତ ଯାହା ଇନ୍ଦ୍ରିୟ ଗୋଚର ତାହା ବ୍ରହ୍ମରେ ପରିପୂର୍ଣ୍ଣ ।)

ଏହି ବ୍ରହ୍ମ ଦୂରରେ ନିକଟରେ ଆତ୍ମତତ୍ତ୍ୱ ଗତିରେ ବିଦ୍ୟମାନ -

'ତଦେଜତି ତନ୍ନୈଜତି ତଦ୍ଦୂରେ ତଦ୍ଦନ୍ତିକେ
ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବାସ୍ୟାସ୍ୟା ବାହ୍ୟତଃ ।'

ଆତ୍ମା ନିଶ୍ଚଳ କିନ୍ତୁ ସେହି ଆତ୍ମା ଦେହ, ମନ ଇନ୍ଦ୍ରିୟ ପ୍ରଭୃତି ଉପାଧି ଦ୍ୱାରା ସକ୍ରିୟ ଓ ଚଳ । ମନୁଷ୍ୟ କେବଳ ଦେହ ଓ ମନକୁ ନେଇ ନୁହେଁ, ତା' ଭିତରେ ଅଛି ଆତ୍ମା- ଯାହାକୁ ପ୍ରାଣ କହିଲେ ବୁଝାଯିବ । ରାଧାକୃଷନ୍ କହିଛନ୍ତି, Men is not body and mind but he is the Sprit ? ଆତ୍ମା ଅବିନେଶ୍ୱର ଅମର

ବା ଚିରନ୍ତନ । ଜୀବ ମଧ୍ୟରେ ଏହି ଆତ୍ମା ବିଦ୍ୟମାନ । ଜୀବ ମରଃ ମାତ୍ର ଆତ୍ମା ଅମର ଏହା ପରମାତ୍ମାର ଏକ ଅଂଶ । ମଣିଷର କାୟା କଳେବର ନଷ୍ଟ ହେଲା ପରେ ଏହି ଆତ୍ମା ପରମାତ୍ମା ସଂଗେ ଲୀନ ହୋଇଯାଏ । କୁରୁକ୍ଷେତ୍ର ଯୁଦ୍ଧରେ ଅର୍ଜୁନ ଯେତେବେଳେ ବିପକ୍ଷରେ ପିତାମହ ଭୀଷ୍ମ, ଗୁରୁ ଦ୍ରୋଣାଚାର୍ଯ୍ୟ ଓ ଶତଭ୍ରାତାଙ୍କୁ ଦେଖିଛନ୍ତି, ସେତେବେଳେ ସେ ମୋହାଚ୍ଛନ୍ନ ହୋଇ ଗାଣ୍ଡିବ ଫୋପାଡ଼ି ଦେଇଛନ୍ତି । ଶ୍ରୀକୃଷ୍ଣ ମୋହ ଭଙ୍ଗ ପାଇଁ ବୁଝାଇଛନ୍ତି, ହେ ଅର୍ଜୁନ ! ତୁମେ ସିନା ସେମାନଙ୍କ ବାହ୍ୟ ଶରୀରକୁ କ୍ଷତ ବିକ୍ଷତ କରିବ, ମାତ୍ର ସେମାନଙ୍କ ଆତ୍ମାକୁ ନଷ୍ଟ କରିପାରିବ ନାହିଁ । ଗୀତାରେ ବର୍ଣ୍ଣିତ ଅଛି -

"ନୈନଂ ଛିନ୍ଦତି ଶସ୍ତ୍ରାଣି ନୈନଂ ଦହତି ପାବକଃ
ନ ଚୈନ କ୍ଲେଦୟାନ୍ତ୍ୟାପୋ ନ ଶୋଷୟତି ମାରୁତଃ ।"

ବେଦ, ଉପନିଷଦ, ସଂହିତା - ସବୁଥିରେ ଏହି ତତ୍ତ୍ୱ ବିଦ୍ୟମାନ । ପଞ୍ଚ ତନ୍ମାତ୍ର - (ଶବ୍ଦ-ସ୍ପର୍ଶ-ରୂପ-ରସ-ଗନ୍ଧ)ର ସୃଷ୍ଟି ପଞ୍ଚଭୂତ - (କ୍ଷିତି-ଅପ୍-ତେଜ-ବ୍ୟୋମ-ମରୁତ)କୁ ଆଶ୍ରୟ କରିଥାଏ । ମଣିଷ ଶରୀର ମଧ୍ୟ ଏହି ପଂଚଭୂତରେ ଗଠିତ । ତାହାର ପଞ୍ଚ ଜ୍ଞାନେନ୍ଦ୍ରିୟ (ବାକ୍,ପାଦ,ହସ୍ତ,ଗୁହ୍ୟ,ଉପସ୍ଥ) ଓ ମନ ମିଶି ଏକାଦଶ ଇନ୍ଦ୍ରିୟ ଷଡ଼ରିପୁ - (କାମ,କ୍ରୋଧ,ଲୋଭ,ମୋହ, ମଦ,ମାତ୍ସର୍ଯ୍ୟ)ର ପ୍ରଭାବରେ ମଣିଷ ଜାଗତିକ ବିଷୟ ବାସନା , କାମନା,ଭିତରେ ପ୍ରମତ୍ତ ରହେ । ଫଳରେ ମଣିଷର ଆତ୍ମଜ୍ଞାନ ଲୋପପାଏ । ମଣିଷ ଯେ ପରମାତ୍ମାର ଏକ ଅଂଶ ବିଶେଷ- ଏହି ଉପଲବ୍ଧି ମାନବ ପକ୍ଷରେ ଅସମ୍ଭବ ନୁହେଁ । ଏହି ଆତ୍ମଜ୍ଞାନ ବିନା ମନୁଷ୍ୟ ପଶୁତୁଲ୍ୟ: ପଶୁର ମଧ୍ୟ ଆତ୍ମା ଅଛି କିନ୍ତୁ ତାର ଆତ୍ମଜ୍ଞାନ ନାହିଁ । ପଶୁ ଓ ମଣିଷର ଜୈବିକ ପ୍ରବୃତ୍ତି (ଆହାର,ନିଦ୍ରା,ଭୟ,ମୈଥୁନ) ସମାନ ଥାଏ । ମାତ୍ର ମଣିଷର ଯେଉଁ ସୂକ୍ଷ୍ମ ବୃତ୍ତିଗୁଡ଼ିକ ଯଥା- ଦୟା, କ୍ଷମା,ବିବେକ, ଧୈର୍ଯ୍ୟ, ସହିଷ୍ଣୁତା, ପ୍ରେମ ପ୍ରଭୃତି ଥାଏ ତାହା ପଶୁମାନଙ୍କର ନଥାଏ । ସେଥିପାଇଁ ମନୁଷ୍ୟକୁ ସୃଷ୍ଟିରେ ଶ୍ରେଷ୍ଠ ଜୀବ ବୋଲି କୁହାଯାଏ । ମଣିଷର ସୂକ୍ଷ୍ମ ବୃତ୍ତିଗୁଡ଼ିକ ମଧ୍ୟରେ 'ପ୍ରେମ'ରୂପକ ବୃତ୍ତି ହିଁ ମାନବକୁ ଦେବତ୍ୱକୁ ଉନ୍ନୀତ କରେ । ଆନନ୍ଦ ହିଁ ପ୍ରେମର ତାତ୍ପର୍ଯ୍ୟ । ଏହି ଆନନ୍ଦ ପାଇଁ ମଣିଷ ସଦାସର୍ବଦା ଲାଳାୟିତ । ମାନବ ସ୍ତ୍ରୀ-ପୁତ୍ର,ଆତ୍ମୀୟ-ସ୍ୱଜନଙ୍କୁ ଯେଉଁ ପ୍ରେମ କରେ ତାହାର ମୂଳଉତ୍ସ ହେଉଛି ଆତ୍ମପ୍ରୀତି । ସେ ଆତ୍ମାକୁ ହିଁ ପ୍ରେମ କରିଥାଏ । ପରୋକ୍ଷରେ ଏହି ଆତ୍ମାପରମାତ୍ମାର ଅଣୁସତ୍ତାବିଶେଷ । ପରମାତ୍ମା ସତ୍-

ଚିଦ୍ ଆନନ୍ଦମୟ । ମଣିଷ ଦେହରେ ସେହି ଆତ୍ମା ଥିବା ପର୍ଯ୍ୟନ୍ତ ସେ ସମସ୍ତଙ୍କୁ ପ୍ରେମ କରେ ଆନନ୍ଦ ପାଇଁ । ଦେହରୁ ଆତ୍ମା ବହିର୍ଭୁତ ହେଲେ ସେହି ଆତ୍ମା ମଧ୍ୟ ଦେଇ ପରମାତ୍ମାର ସାନ୍ନିଧ୍ୟ ଲୋଡ଼େ । ଆତ୍ମା ହିଁ ସ୍ତ୍ରୀ-ପୁତ୍ର ଠାରୁ ସର୍ବଶ୍ରେଷ୍ଠ । ଉପନିଷଦରେ କୁହାଯାଇଛି -

"ତଦେତତ୍ ପ୍ରେୟଃ ପୁତ୍ରାତ୍, ପ୍ରେୟା ବିତ୍ତାତ୍
ପ୍ରେୟୋଽନ୍ୟାସାତ୍ ସର୍ବସ୍ମାତ୍
ଅନ୍ତରତରଂ ଯଦୟମାତ୍ମା ।"

ପରମାତ୍ମା ବ୍ୟତୀତ ଅନ୍ୟ କେହି ପ୍ରିୟ ହୋଇପାରନ୍ତି ନାହିଁ । ପ୍ରେମର ପ୍ରକୃତ ଅର୍ଥ ବୁଝିପାରିଲେ ମାନବ ସଂସାରର ଅସାରତା ସଂପର୍କରେ ଅବହିତ ହୋଇ ପାରିବ । ଏହି ଉପଲବ୍ଧି ହିଁ ଆଧ୍ୟାତ୍ମବାଦର ପ୍ରଧାନ କଥା । ଓଡ଼ିଆ ଭାଗବତରୁ ଏକ ଦୃଷ୍ଟାନ୍ତ ଉଲ୍ଲେଖ କରାଯାଇପାରେ । ଭାଗବତରେ କୃଷ୍ଣ ହେଉଛନ୍ତି ପରମ ଗୋପାଙ୍ଗନା ଓ ବୃନ୍ଦାବତୀ ହେଉଛନ୍ତି ଜୀବର ପ୍ରତୀକ । ଯେତେବେଳେ ଗୋପାଙ୍ଗନାମାନେ ସାଂସାରିକ ଜୀବନର ମୋହମାୟା ମଧ୍ୟରେ ଆବଦ୍ଧ, ସେତେବେଳେ କୃଷ୍ଣଙ୍କ ମୂରଲୀ ରନ୍ଧ୍ର ହେଉଛି ବ୍ରହ୍ମରନ୍ଧ୍ର । ସେଥିରେ ସୃଷ୍ଟି ହୋଇଛି ଅନାହତ ଧ୍ୱନୀ । ଏହି ଧ୍ୱନୀ ଶୁଣି ଜୀବସ୍ୱରୂପା ଗୋପାଙ୍ଗନାମାନଙ୍କର ଭ୍ରମ ଲୋପ ପାଇଛି । ତେଣୁ ସ୍ୱାମୀ-ପୁତ୍ର ଘରଛାଡ଼ି ଉନ୍ମନା ହୋଇ ଧାଇଁଛନ୍ତି -

କେ କରୁଥିଲା ଦଧିଯୋଗ, ଶୁଣି ଧାଇଁଲା ବେଗେ ବେଗେ
କେ ଦୁଧ ଚୂଲିରେ ବସାଇ, ମୁରଲୀ ଶୁଣି ଗଲା ଧାଇଁ । (ଦଶମ ସ୍କନ୍ଧ)

ଜୀବର ମନକୁ ପାର୍ଥିବ ସଂସାରର ବନ୍ଧନ ଆଉ ବାନ୍ଧି ରଖି ପାରିନି । ପୁଣି କୃଷ୍ଣଙ୍କ ନିକଟରେ ଗୋପାଙ୍ଗନା ମାନେ ଉପସ୍ଥିତ ହେବା ପରେ ଜୀବର ମନକୁ ତଉଲିବା ପାଇଁ କୃଷ୍ଣ ସଂସାରର ନିୟମ, ସାମାଜିକ ଆଦର୍ଶ ସଂପର୍କରେ ସଚେତନ କରାଇ ଫେରିଯବା ପାଇଁ ନିର୍ଦ୍ଦେଶ ଦେଇଥିଲେ ହେଁ ସେମାନେ ସେଥିରେ ଭୁଲି ନାହାଁନ୍ତି । କାରଣ ଜୀବର ପରମ ପାଇଁ ବ୍ୟାକୁଳତା ତଥା ତଲ୍ଲୀନ ହେବାର ଦୃଢ଼ତାର ପରିସ୍ଫୁଟନ ହୋଇଛି । ନିଶ୍ଚଳ ପରଂବ୍ରହ୍ମଙ୍କୁ ଚିହ୍ନିପାରି କହିଛନ୍ତି -

'ତୁ ନୋହୁ ଯଶୋଦା ନନ୍ଦନ,
ଅନାଦି ପ୍ରଭୁ ନିରଞ୍ଜନ ।'

ଶେଷରେ କୃଷ୍ଣ -ଗୋପାଙ୍ଗନା ମାନଙ୍କର ରାସକ୍ରୀଡ଼ା ଆରମ୍ଭ ହୋଇଛି ।

ଅବଶ୍ୟ ଜାଗତିକ ବିଷୟ ବାସନା ପ୍ରତି ଆସକ୍ତ ଓ ମୋହ-ମାୟାକୁ ଏଡ଼ାଇବା ମଣିଷ ପକ୍ଷରେ କଷ୍ଟସାଧ୍ୟ ହୋଇଥାଏ ପ୍ରବୃତ୍ତିର ଅନିବାର୍ଯ୍ୟତା ହେତୁ । ପଂଚଭୂତର ଶରୀର ଭିତରେ କ୍ଷିତି ଓ ବ୍ୟୋମ ସଦାବେଳେ ଅଶୁଭ । ମଣିଷର ଯାବତୀୟ ବିକୃତିରେ ଉତ୍ପନକାରୀ ଶକ୍ତି ହେଉଛି କ୍ଷିତି । ରିପୁ ଶକ୍ତିମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେଉଛି 'କାମ' ନାମକ ବୃତ୍ତି । ଏହି କାମ ଭାବ ସଂଗରୁ ଜାତ ହୁଏ । କାମରୁ କ୍ରୋଧ, ସମ୍ମୋହ ଓ ବୁଦ୍ଧି ବିନାଶ ହୁଏ । 'ଗୀତା'ରେ ଏହି ମୂଳ ତତ୍ତ୍ୱ ରହିଛି -

'ସଙ୍ଗାତ୍ ସଂଯାୟତେ କାମଃ, କାମାତ୍ କ୍ରୋଧାଭିଜାୟତେ
କ୍ରୋଧାତ୍ ଭବତି ସମ୍ମୋହ, ସମ୍ମୋହାତ୍ ସ୍ମୃତି ବିଭ୍ରମ,
ସ୍ମୃତି ଭ୍ରମାତ୍ ବୁଦ୍ଧିନାଶୋ, ବୁଦ୍ଧି ନାଶାତ୍ ପ୍ରଣସ୍ୟତି ।'

ଫଳରେ ମଣିଷର ଆତ୍ମଜ୍ଞାନ ଲୋପ ପାଏ । ତେଣୁ 'କାମ' ପ୍ରେମର ଅନ୍ତରାୟ କରେ । ପ୍ରେମ କାମ ରହିତ ହେଲେ ମଣିଷ ପରମାତ୍ମାର ସନ୍ଧାନ ପାଇପାରେ । ଯଥାର୍ଥରେ କୁହାଯାଇଛି -

'ନିଜ ସୁଖ ଭୋଗ କରିବାର ଇଚ୍ଛାର ନାମ କାମ,ପ୍ରିୟ ବ୍ୟକ୍ତିର ସୁଖ ସମ୍ପାଦନ ଇଚ୍ଛାର ନାମ ପ୍ରେମ, କାମ ଅନ୍ଧକାର ତମଃ,ପ୍ରେମ ନିର୍ମଳ ଭାସ୍ୱର ।'

ବୈଷ୍ଣବୀୟ ମାନେ ମଧ୍ୟ କହନ୍ତି -

'ଆତ୍ମେନ୍ଦ୍ରିୟ ପ୍ରୀତି ବାଞ୍ଛା ; ତାରେ ବୋଲି କାମ,
କୃଷ୍ଣେନ୍ଦ୍ରିୟ ପ୍ରୀତି ବାଞ୍ଛା - ଧରେ ପ୍ରେମ ନାମ ।"

ଦୈହିକ କାମନା ବା ବ୍ୟକ୍ତି କୈନ୍ଦ୍ରିକ ସ୍ୱାର୍ଥକୁ ତ୍ୟାଗ କରି ନିଷ୍ଠତା ତଥା ତ୍ୟାଗପୂତ ସାଧନାରେ ବ୍ରତୀ ହେଲେ ଦେହରୁ ଦେହାତୀତ ତଥା ଅପାର୍ଥିବ ସ୍ତରକୁ ଯିବା ସମ୍ଭବ ହୁଏ । ଏଠାରେ ବୈଷ୍ଣବୀ ଗୋପୀଶ୍ରେଷ୍ଠା ରାଧିକାଙ୍କର ଏକ ଉଦାହରଣ ଦିଆଯାଇପାରେ -

ଥରେ ଶ୍ରୀକୃଷ୍ଣଙ୍କ ନିକଟରେ ଉଦ୍ଧବ ଯୁକ୍ତି ବାଢ଼ିଲେ ଯେ, ସେ ହେଉଛନ୍ତି ତାଙ୍କର ଶ୍ରେଷ୍ଠ ଭକ୍ତ । ମାତ୍ର କୃଷ୍ଣ ସେଥିରେ ସମ୍ମତି ପ୍ରକାଶ ନ କରି ପରୀକ୍ଷା କରିବାକୁ ଯାଇ ନିଜ ଦେହରେ ଉତ୍ତାପ ବମାଇ କହିଲେ, 'ଉଦ୍ଧବ ! ମୋ ଦେହରୁ ଜ୍ୱର ଯଦି ଭଲ କରିଦେବ, ତେବେ ତୁମେ ଶ୍ରେଷ୍ଠ ଭକ୍ତ ବୋଲି ପ୍ରମାଣିତ ହେବ ।' ଉଦ୍ଧବ ବିନୟ ସହକାରେ ଜଣାଇଲେ ପ୍ରଭୁ! ଏହାର ବିଧାନ କୁହନ୍ତୁ ।' ଶ୍ରୀକୃଷ୍ଣ କହିଲେ

ଯେ ଯେଉଁ ବ୍ୟକ୍ତି ତା'ର ପାଦୁକା ପାଣି ମୋତେ ଦେଇପାରିବ, ତେବେ ମୋର ଜ୍ୱର ପ୍ରଶମିତ ହେବ । ଏହା ଶୁଣି ଉଦ୍ଧବ ଚମକି ପଡ଼ିଲେ । ବ୍ରହ୍ମା, ମହେଶ୍ୱର ପ୍ରଭୃତି ଦେବତା ତଥା ସାଧକମାନଙ୍କ ପାଖରୁ ଉଦ୍ଧବ ନିରାଶ ହୋଇ ଫେରିଲେ । କୃଷ୍ଣଙ୍କ ନିକଟରେ ଏପରି ଭକ୍ତର ଦୁର୍ଲଭତା ସଂପର୍କରେ କହିବାରୁ କୃଷ୍ଣ ତାଙ୍କୁ ଗୋପୀ ରାଧାଙ୍କ ପାଖକୁ ଯିବା ପାଇଁ ନିର୍ଦ୍ଦେଶ ଦେଲେ । ଅନିଚ୍ଛା ସତ୍ତ୍ୱେ ଉଦ୍ଧବ ଯାଇ ପହଞ୍ଚିବାରୁ ରାଧା ବ୍ୟଗ୍ର ହୋଇ କୃଷ୍ଣଙ୍କ ଜ୍ୱର ପ୍ରସଙ୍ଗ ଓ ତା'ର ବିଧାନ ଶୁଣି ପାଦୁକା ପାଣି ଦେଇ ପଠାଇଲେ । କୃଷ୍ଣ ହସି ହସି କହିଲେ, 'ଉଦ୍ଧବ ତୁମେ ଓ ଅନ୍ୟ ଭକ୍ତମାନେ ପାଦୁକା ପାଣି ଦେଲେ ନର୍କଗାମୀ ତଥା ମହାପାପ ହେବାର ଭୟ କରିଛ । ମାତ୍ର ରାଧା ମୋ ପାଇଁ ବରଂ ମହାପାପୀ ହୋଇ ନର୍କଗାମୀ ହେଉ କିନ୍ତୁ ମୋର ଅସୁସ୍ଥତାକୁ ସେ ବରଦାସ୍ତ କରିପାରିନି, ଏକାତ୍ମ ଭାବରେ ସେ ପାଦୁକା ପାଣି ଦେଇଛି ।' ଉଦ୍ଧବ ନିଜକୁ ପରାଜିତ ମନେ କରି ପୁଣି ଏକ ପରୀକ୍ଷା ପାଇଁ ନିବେଦନ କଲେ । କୃଷ୍ଣଙ୍କ ନିର୍ଦ୍ଦେଶରେ ପୁଣି ଏକ ପରୀକ୍ଷାର ଆୟୋଜନ ହେଲା । ଷୋଳସହସ୍ର ଗୋପାଙ୍ଗନା ଓ ଉଦ୍ଧବଙ୍କୁ କୃଷ୍ଣ ନିର୍ଦ୍ଦେଶ ଦେଲେ ଯେ ତୁମ୍ଭେମାନେ ନିକଟସ୍ଥ ଯମୁନା କୂଳରୁ ଗୋଟିଏ କଳସୀ ନେଇ ପାଣି ଭର୍ତ୍ତି କରି ମୋ ପାଖକୁ ଏପରି ଭାବରେ ଆଣିବ ଯେ, ଟୋପାଏ ସୁଦ୍ଧା ପାଣି ଯେପରି ପଡ଼ିବ ନାହିଁ । ଆଜ୍ଞା ପାଇ ଉଦ୍ଧବ ଓ ଗୋପାଙ୍ଗନାମାନେ ପାଣି ଆଣି କୃଷ୍ଣଙ୍କ ନିକଟରେ ଉପସ୍ଥିତ ହେଲେ । କୃଷ୍ଣ ପଚାରିଲେ, 'ଉଦ୍ଧବ, ତୁମେ ଯମୁନା କୂଳରୁ ପାଣି ଆଣୁଥିବା ସମୟରେ କ'ଣ ଚିନ୍ତା କରୁଥିଲ ?' ଉଦ୍ଧବ କହିଲେ, 'ପ୍ରଭୁ! ମୁଁ ଭାବୁଥିଲି ଆସିବା ସମୟରେ କିପରି କଳସୀରୁ ପାଣି ନ ପଡ଼ିବ ।' ଗୋପୀମାନଙ୍କୁ କୃଷ୍ଣ ପଚାରିଲେ, 'ତୁମ୍ଭେମାନେ କ'ଣ ଚିନ୍ତା କରୁଥିଲ ? ସେମାନେ କହିଲେ, 'ଆମର ସଦା ସର୍ବଦା ଆପଣଙ୍କର ଚିନ୍ତା, ଅନ୍ୟ ଚିନ୍ତା ଆମର କ'ଣ ହେବ ? ଉଦ୍ଧବ ଲଜ୍ଜିତ ହୋଇ ଅପମାନ ବୋଧ କଲେ ।

ରୂପଗୋସ୍ୱାମୀ ସେଥିପାଇଁ କହିଛନ୍ତି -

'ସର୍ବଦା ଧ୍ୱଂସ ରହିତଂ ସତ୍ୟପି ଧ୍ୱଂସକାରଣେ,
ଯଦ୍ ଭାବ ବନ୍ଧନଂ ଯୁନୋଃ ସେ ପ୍ରେମ କୀର୍ତ୍ତତେଃ ।'

ଅର୍ଥାତ୍ ଧ୍ୱଂସ ହେବାର କାରଣ ଥିବା ସତ୍ତ୍ୱେ ଯୁବକ ଯୁବତୀମାନଙ୍କର ଯେଉଁ ଭାବ ବନ୍ଧନ କୌଣସି ପ୍ରକାରରେ ଧ୍ୱଂସ ହୁଏ ନାହିଁ, ତାହାହିଁ ପ୍ରକୃତ ପ୍ରେମ ।

ଅସୀମ ହିଁ ଚିରନ୍ତନ ସୁଖ । ଆର୍ଯ୍ୟ ଋଷିମାନେ କହିଛନ୍ତି, 'ଯା ବୈଭୂମା

ତତ୍ସୁଖଂ ନାଚେ ସୁଖମସ୍ତି ।' ଆଧ୍ୟାତ୍ମିକତା ହିଁ ମଣିଷର ମୁକ୍ତି ପଥ । ଏହି ଅସୀମ ସହ ଏକାତ୍ମ ହେବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ଏଥିପାଇଁ ମଧ୍ୟ ସୃଷ୍ଟି ହୋଇଛି ଶୈବ, ଶାକ୍ତ,ବୈଷ୍ଣବ, ନାଥ,ଗାଣପତ୍ୟ, ମହିମା ପ୍ରଭୃତି ବିଭିନ୍ନ ଧର୍ମ । ମାତ୍ର ଏଥିରେ ଲକ୍ଷ୍ୟ ଓ ଆଦର୍ଶ ସମାନ । ମହାତ୍ମା ଗାନ୍ଧୀ କହିଥିଲେ 'I find the same God in the Bibel or Quoran, which I search in the pages of the Bhagabata Gita,' ପ୍ରତ୍ୟେକ ଧର୍ମର ଅନ୍ତିମ ଲକ୍ଷ୍ୟ ହେଉଛି ଆଧ୍ୟାତ୍ମିକ ଚେତନାକୁ ପ୍ରକଟ କରିବା ।

ଆଧ୍ୟାତ୍ମିକ ଭାବ ହିଁ ମନୁଷ୍ୟକୁ କରେ ସଂଯତ, ଆଦର୍ଶବାନ । ମାନବିକ ଭାବଧାରାକୁ ଏହା ଉଦ୍‌ବୁଦ୍ଧ କରେ । ଏହା ଅସତ୍‌ରୁ ସତ୍‌କୁ, ଅନ୍ଧାରରୁ ଆଲୋକକୁ, ମୃତରୁ ଅମୃତକୁ ଯିବା ପାଇଁ ପ୍ରେରଣା ଦିଏ । ବିଂଶ ଶତାବ୍ଦୀର ବସ୍ତୁବାଦୀ ସଭ୍ୟତା ମଣିଷକୁ ଆଜି ଧ୍ୱଂସାଭିମୁଖୀ କରିଛି । ହଲିଉଡ୍ ସୁନ୍ଦରୀ ଆଜି ପ୍ରାଚୁର୍ଯ୍ୟର ଶିଖର ଦେଶରେ ଉପନୀତ ହୋଇ ସୁଦ୍ଧା ଆତ୍ମହତ୍ୟା କରୁଛି । ଆଜିର ପାରିବାରିକ, ସାମାଜିକ, ରାଷ୍ଟ୍ରିକ ଜୀବନ ବିକଳାଙ୍ଗ, ବିପର୍ଯ୍ୟସ୍ତ, ସଂକଟାପନ୍ନ । ଏ ଶତାବ୍ଦୀ 'Brings us further from the God and nearer to the dust.' ବସ୍ତୁବାଦ ମଣିଷକୁ ଜଡ଼ବାଦରେ ପରିଣତ କରିଦିଏ ବସ୍ତୁ ଅନିତ୍ୟ, କ୍ଷଣଭଙ୍ଗୁର, ତେଣୁ ଆଧ୍ୟାତ୍ମିକ ଚେତନାର ବିକାଶ ବିନା ମଣିଷର ସ୍ଥିତି ଅସମ୍ଭବ । T.S.Eliot ସେଥିପାଇଁ କହିଛନ୍ତି, ' Blindly and vainly for man is a vainthing and man without God is a seed upon the wind : driven this way and that way and finding no place of lodgement and germination.

ଆଜିର ସଂସ୍କୃତି ଭସ୍ମାସୁର ଭଳି ଧ୍ୱଂସାଭିମୁଖୀ ହେବାକୁ ବସିଛି । ଏହା ଆଧ୍ୟାତ୍ମିକତା ବିନା ପୂର୍ଣ୍ଣତା ହୋଇ ନ ପାରେ । ସମଗ୍ର ବିଶ୍ୱରେ ଭାରତୀୟ ସଂସ୍କୃତି ସର୍ବପ୍ରାଚୀନ ହେବାର ମୂଳ ଭିତ୍ତି ହେଉଛି ଆଧ୍ୟାତ୍ମିକତା । ତେଣୁ ଆଧ୍ୟାତ୍ମିକ ଭାବ ଦ୍ୱାରା ମଣିଷ ଚିରନ୍ତନ ଶାନ୍ତି ତୃପ୍ତି ପାଇବା ସମ୍ଭବ । ଏଥିପାଇଁ ଆତ୍ମା ମଧ୍ୟ ଦେଇ ପରମାତ୍ମାର ସାନ୍ନିଧ୍ୟ ଲୋଡ଼ା । ମୁଖ୍ୟତଃ ଅସାର ସଂସାରର ନଶ୍ୱରତା ଜୀବନର କ୍ଷଣିକତା ତଥା ଆତ୍ମଜ୍ଞାନ ସଂପର୍କରେ ସଚେତନ ହେଲେ ମଣିଷ ପ୍ରବୃତ୍ତିରୁ ନିବୃତ୍ତି, ଲୌକିକରୁ ଅଲୌକିକ, ସସୀମରୁ ଅସୀମ ସହ ମିଶି ଚିରନ୍ତନ ମୁକ୍ତି ଓ ଆନନ୍ଦ ପାଇପାରିବ ।

ସାହିତ୍ୟ ଏକ ବ୍ୟାପକ ଶବ୍ଦ ଓ ଏହାର ବହୁ ବିଭାଗ ରୂପେ କବିତା, କାବ୍ୟ,

ଗଳ୍ପ, ନାଟକ, ଉପନ୍ୟାସ, ପ୍ରବନ୍ଧ, ରମ୍ୟରଚନା, ସମାଲୋଚନା ପ୍ରଭୃତି ପରିସରଭୁକ୍ତ । ସମାଜ ଓ ଜୀବନକୁ ଗଠନ କରିବାର ପ୍ରୟାସରେ ଏହା ବ୍ରତୀ । ସାହିତ୍ୟିକ ମଧ୍ୟ ସମାଜର ଜଣେ ବ୍ୟକ୍ତି ସେ ଅନୁଭବ କରେ ସମାଜର ଚଳଣୀ ଓ ଚମକ ଓ ତାକୁ ହିଁ ସାହିତ୍ୟରେ ପ୍ରକାଶ କରେ ।

ଆଧ୍ୟାତ୍ମିକତା ଏକ ଅନୁଭବ ତଥା ଅନୁଭୂତିର ସତ୍ତା । ତେଣୁ ଏହି ଚିନ୍ତା ଚେତନା ହିଁ ସାହିତ୍ୟରେ ରୂପାନ୍ତରିତ ହୁଏ । ସତ୍ୟ-ଶିବ-ସୁନ୍ଦରର ଆବାହକ ରୂପେ ସାହିତ୍ୟକୁ କାଳଜୟୀ କରେ । ସବୁ ସାହିତ୍ୟରେ ଏହାର ପ୍ରଭାବ ରହି ଆସିଛି ଓ ରହିଥିବ ମଧ୍ୟ । ତେଣୁ ଓଡ଼ିଆ ସାହିତ୍ୟ ଆଧ୍ୟାତ୍ମିକ ଭାବ ଭାବନାରେ ଅଭିମନ୍ତ୍ରିତ ହୋଇଛି - ଏହା ସତ୍ୟ ଅଟେ । ଏହା ଏକ ବିସ୍ତୃତ ଆଲୋଚନାର ଅପେକ୍ଷା କରେ । ❖

ବରିଷ୍ଠ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
**ନୀଳମଣି ମହାବିଦ୍ୟାଳୟ, ରୂପ୍ସା, ବାଲେଶ୍ୱର ।**

# ସାଂପ୍ରତିକ ଓଡ଼ିଆ ଶିଶୁ କବିତାରେ "ଆଧ୍ୟାତ୍ମିକତା' ଓ ଶିଶୁ - ସମାଜ ଉପରେ ତାହାର ପ୍ରଭାବ

☆ ଡଃ ମନୀନ୍ଦ୍ର ମହାନ୍ତି

ମଣିଷ ମୁଖ୍ୟତଃ ଦୁଇଗୋଟି ଉପାଦାନରେ ଗଢ଼ା । ଗୋଟିଏ ହେଲା ତା'ର ଦେହ ଓ ଅନ୍ୟଟି ହେଲା- ତା'ର ମନ । ତେଣୁ କୁହାଯାଏ 'ମନ' ଓ 'ଅବୟବ'ରୁ ମାନବର ସୃଷ୍ଟି । ଏହି 'ମନ ଜଗତ' ଅଦୃଶ୍ୟ ହୋଇଥିବାରୁ ତାହାର କଳନା କରିବା କଷ୍ଟକର ହୁଏ । ସେହି ମନ ଜଗତରେ ସ୍ମୃତି, ଚିନ୍ତନ, ବିଚାରବୋଧ, ସହିତ 'ଚେତନାବୋଧ'ର ସ୍ଥିତିକୁ ସ୍ୱୀକାର କରାଯାଏ ।ଏହି 'ଚେତନାବୋଧ'-- ବୌଦ୍ଧିକତାର ଅଂଶ ବିଶେଷ ହେଲେ ମଧ୍ୟ 'ଆତ୍ମ ବିଶ୍ଳେଷଣ'ଓ ଶେଷରେ 'ଆତ୍ମ ପରିଚୟ' - ଏହାର ଶେଷକଥା। ନିଜେ ନିଜର ପରିଚୟକୁ ଜାଣି ନେଲେ ଆଉ କିଛି ଝାମେଲା ରହିବ ନାହିଁ । ନିଜେ ନିଜର ଜୀବନ ତରିକୁ ଆହୁଲା ମାରି ସମୟର ନଦୀରେ ଯାତ୍ରା କରିହେବ ।

ଏହି ସଚେତନ ଭାବ ହିଁ ଆମକୁ 'ସଂଯମତା' ଆଣିଦିଏ । ଏହି ସଂଯମତା ହିଁ ଆମକୁ ସଫଳ ଜୀବନ ଆଣିଦିଏ । ଏହି ଦିଗରେ 'ନୈତିକବୋଧ' ଆମକୁ ଏକ ଶକ୍ତି ପାଖରେ ପହଞ୍ଚାଇ ଦିଏ । ଏହି 'ଶକ୍ତି'କୁ ଆମେ 'ଦିବ୍ୟଶକ୍ତି' କହୁଁ ବା 'ଅଦୃଶ୍ୟ ଶକ୍ତି କହୁ' ବା ଈଶ୍ୱର କହିଥାଉଁ ।

ପରେ ପରେ ବିଭିନ୍ନ ଭୌଗୋଳିକ ପରିବେଶ ମଧ୍ୟରେ ଏହି 'ଶକ୍ତି'କୁ ଆମେ ବିଭିନ୍ନ ରୂପ ପ୍ରଦାନ କରୁ । କେତେବେଳେ ଝୁମ୍ପୁରା ବରଗଛ ଉପରେ ଖଣ୍ଡେ ପଥର ଉପରେ ସିନ୍ଦୂର ବୋଳି ଦେଇ ଠାକୁରାଣୀ କହି ମୁଣ୍ଡିଆ ମାରୁଁ ତ, କେତେବେଳେ ମନ୍ଦିରଟିଏ ଗଢ଼ି ଦେଇ ଦିଅଁ ବସେଇ ପୂଜା-ଆରଧନା କରୁଁ, ଅଥବା ଚର୍ଚ୍ଚଟିଏ ବା ମସ୍‌ଜିଦ୍‌ଟିଏ ଗଢି ଈଶ୍ୱରଙ୍କୁ ପ୍ରାର୍ଥନା କରୁ ।

ଏତିକିରେ ବି ଏକଥା ଇତି ହେଲାନାହିଁ । ଏହି ପ୍ରାର୍ଥନା ମଧ୍ୟରେ ନିଜକୁ 'ସମର୍ପଣ' କରିଦେବା ହିଁ ଆମ ଜୀବନର ଶେଷ କଥା । ନିଜକୁ 'ସମର୍ପଣ' କରିଦେବା ପରେ ଆଉ ନିଜର ବୋଲି କଅଣ ଥାଏ କି ? ସବୁ ତ ଈଶ୍ୱରଙ୍କର । ଈଶ୍ୱରଙ୍କ ଠାରେ 'ଲୀନ' ହୋଇଗଲେ ଆମେ 'ମହାନିର୍ବାଣ' ଲାଭ କରୁ ବୋଲି କୁହାଯାଏ । ଆଉ 'ପୁନଃର୍ଜନ୍ମ' ହୁଏ ନାହିଁ । ଆଉ ପରମାତ୍ମାରୁ ଆତ୍ମା ଖଣ୍ଡିତ ହୋଇ ପୃଥିବୀ

ପୃଷ୍ଠରେ ମାତୃଗର୍ଭରେ ସଂଚରିତ ହୁଏ ନାହିଁ । ଗୋଟିଏ ଆତ୍ମାର ପୂର୍ଣ୍ଣଚ୍ଛେଦ ପଡ଼ିଥାଏ ।

ଯଦି ଏହା ହିଁ ଆମ ଜୀବନର ଆରମ୍ଭ-ମଧ୍ୟ ଓ ଶେଷ ତେବେ ସେହି ଅନୁସାରେ ଆମେ କାର୍ଯ୍ୟ କ୍ଷେତ୍ରରେ ଆଗେଇବା ଆମର ଲକ୍ଷ୍ୟ ହେବା ଉଚିତ । ତେଣୁ, ଏହି ଚେତନାକୁ ଆମେ ଗୋଟିଏ ଶବ୍ଦରେ ପ୍ରକାଶ କରିପାରୁ । ତାହା ହେଲା- 'ଆଧ୍ୟାତ୍ମିକତା' । 'ଆଧ୍ୟାତ୍ମିକତା'ର ଅର୍ଥ - ଆତ୍ମା ସମ୍ବନ୍ଧୀୟ ବ୍ରହ୍ମ ସମ୍ବନ୍ଧୀୟ । ଏହା ଜୀବନ-ଦର୍ଶନ ମୂଳକ ପରିଭାଷା ହେଲେ ମଧ୍ୟ ବିଦଗ୍ଧ ସାହିତ୍ୟରେ ଏହାର ସ୍ୱତନ୍ତ୍ର ମୂଲ୍ୟ ରହିଛି ।

ମୋଟାମୋଟି - ଐଶୀଶକ୍ତିକୁ ସ୍ୱୀକାର କରିବା, ଅନୁଭବ କରିବା ଏବଂ ତା" ନିକଟରେ ନିଜ ଜୀବନକୁ ସମର୍ପଣ କରିବା ହିଁ ଏହି 'ଆଧ୍ୟାତ୍ମିକତା' ଭାବର ମୂଳକଥା । ଏହି କ୍ଷେତ୍ରରେ ସାହିତ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି ।

'ସାହିତ୍ୟ' ଯେତେବେଳେ ନିଜ ମନରେ ଉକ୍ତିକୁ ପ୍ରକାଶ କଲା, ସେତେବେଳେ ସେ ପ୍ରଥମେ ଏହି ଐଶୀସତ୍ତାକୁ ଅନୁଭବ କଲା । ତା'ର ଏହି ଅନୁଭୂତିକୁ ସେ ପ୍ରକାଶ କଲା ବିଭିନ୍ନ ବନ୍ଦନା, ଜଣାଣ, କୀର୍ତ୍ତନ ବା ପୁରାଣ ମାଧ୍ୟମରେ । ତେଣୁ ବିଶ୍ୱ ସାହିତ୍ୟର ଆଦିରୂପ ଏହି ଆଧ୍ୟାତ୍ମିକ ଚେତନାରେ ଭରପୂର । ପୌରାଣିକ ଆଖ୍ୟାନ, ଚରିତ୍ର ଏବଂ 'ଲୀଳା', 'ହରଣ' ଓ 'ବୋଧ' ମଧ୍ୟରେ ଐଶୀଶକ୍ତିର ବନ୍ଦାପନା ହିଁ ବିଶ୍ୱର ଆଦିମ ଯୁଗର ଏକ ବଡ଼ ବୈଶିଷ୍ଟ୍ୟ ।

। ଦୁଇ ।

ବିଶ୍ୱ ସାହିତ୍ୟ ଦରବାରରେ 'ଶିଶୁ ସାହିତ୍ୟ' ଏକ ନୂତନ ସୃଷ୍ଟି । ତେଣୁ 'ଶିଶୁ ସାହିତ୍ୟ' ରେ ଏହି ଐଶ୍ୱରୀୟ ଚିନ୍ତା ବା ପ୍ରକାଶ ନ ପାଇବ କିପରି ? 'ଆଧ୍ୟାତ୍ମିକତା' ବିଦ୍‌ଗ୍ଧ ସାହିତ୍ୟରେ ଯେପରି ତତ୍ତ୍ୱପୂର୍ଣ୍ଣ ଭାବରେ ପ୍ରକାଶ ପାଇଥାଏ,ଶିଶୁ ସାହିତ୍ୟ କ୍ଷେତ୍ରରେ କିନ୍ତୁ ତାହା ଭିନ୍ନ ରୂପରେ ପରୋକ୍ଷ ଭାବରେ ପ୍ରକାଶ ପାଇଥାଏ । ଏହି ପ୍ରକାର ରଚନା ଶୈଳୀରେ ଗଭୀର ତତ୍ତ୍ୱ ନଥାଏ, କେବଳ ଈଶ୍ୱରଙ୍କ ଠାରେ ଭକ୍ତିଭାବ ସୃଷ୍ଟି କରିବା, ତାଙ୍କର ଗୁଣ କୀର୍ତ୍ତନ କିରବା, ନିଜର ଦୁଃଖ ଜଣାଇବା ଏବଂ ଜୀବନକୁ ସମର୍ପଣ କରିବା । ଏହିପରି ଏକ ଭାବ ପ୍ରକାଶର ସୀମା ମଧ୍ୟରେ ଶିଶୁ-ସାହିତ୍ୟ ଆବଦ୍ଧ । ସ୍ଥୁଳତଃ ନିଜର ନୈତିକବୋଧକୁ ଜାଗ୍ରତ କରିବା ଏବଂ ଭକ୍ତିଭାବ ସୃଷ୍ଟି କରିବା ଏହାର ମୁଖ୍ୟ ଉଦ୍ଦେଶ୍ୟ ।

କହିବାକୁ ଗଲେ ଶିଶୁ ସାହିତ୍ୟର ଆଦିମରୂପ ମଧ୍ୟ ଈଶ୍ୱରଙ୍କର ଗୁଣଗାନରେ

ଭରପୁର । ପୁଣି ଶିଶୁ-ସାହିତ୍ୟ ଅନ୍ୟ ବିଭାଗ ମଧ୍ୟରୁ କବିତା/ଗୀତରେ ଏହାର ଆଧିକ୍ୟ ପ୍ରକଟିତ ହୋଇଥାଏ ।

ଏବେ ଓଡ଼ିଆ ଶିଶୁ ସାହିତ୍ୟର କେବଳ କବିତା ସ୍ତରରେ ଏହି ଆଧ୍ୟାତ୍ମିକ ଚିନ୍ତା କିପରି ପ୍ରକାଶ ପାଇଛି, ତାହା ସଂକ୍ଷେପରେ ବିଶ୍ଳେଷଣ କରାଯାଉଛି ।

୧୯୮୨-୮୩ ମସିହାରେ ଭୁବନେଶ୍ୱର ଓ କଟକ ଜିଲ୍ଲାର ଉଭୟ ସହର ଓ ମଫସଲ ଅଂଚଳରେ ପିଲାମାନଙ୍କର ପଢ଼ିବା ବିଷୟର ପସନ୍ଦ ସଂପର୍କରେ ବିଶିଷ୍ଟ ଶିଶୁ-ସାହିତ୍ୟିକ ଓ ଶିକ୍ଷାବିତ୍ ଡ଼କ୍ଟର ଜଗନ୍ନାଥ ମହାନ୍ତି ଓ ଡ଼କ୍ଟର ଦିଗ୍‌ରାଜ ବ୍ରହ୍ମା ଏକ ସର୍ବେକ୍ଷଣ କରୁଥିଲେ । ଏଥିରେ ଆଠରୁ ଏଗାର ବର୍ଷର ପିଲାମାନଙ୍କର ମତାମତକୁ ସଂଗ୍ରହ କରାଯାଇଥିଲା । ଏହି ସର୍ବେକ୍ଷଣ କଳାପରେ ସେମାନେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ, ଯେ ବିଭିନ୍ନ ବିଷୟ ମଧ୍ୟରୁ ଶତକଡ଼ା ୧୮.୩୨ ପିଲା ପୌରାଣିକ ବିଷୟ ପଢିବାକୁ ଚାହାଁନ୍ତି ଏବଂ ଏହା ଦ୍ୱିତୀୟ ସ୍ଥାନ ଅଧିକାର କରିଛି । ପ୍ରଥମ ସ୍ଥାନରେ ଆବିଷ୍କାର ବା ଉଦ୍ଭାବ ବିଷୟରେ ରହିଛି । ପୁଣି ପରୀକଥା ବା ଲୋକକଥା ତୃତୀୟ ସ୍ଥାନ ଅଧିକାର କରିଛି । (ଶିଶୁ ସାହିତ୍ୟ ପ୍ରତି ପିଲାମାନଙ୍କର ଆଗ୍ରହ : ଏକ ଅଧ୍ୟୟନ - ପ୍ରଫେସର ଜଗନ୍ନାଥ ମହାନ୍ତି ଓ ପ୍ରାଧ୍ୟାପକ ଡ଼. ଦିଗରାଜ ବ୍ରହ୍ମା - ଓଡ଼ିଆ ଶିଶୁ ସାହିତ୍ୟ ସମୀକ୍ଷା - କଟକ ଟ୍ରେଡ଼ିଂ କମ୍ପାନୀ - କଟକ୨-୨୦୦୦-ପୃ୧୮୧) ଅଧିକାଂଶ ପରୀକଥା ଓ ଲୋକକଥାରେ ଠାକୁର / ଠାକୁରାଣୀ ବା ଈଶ୍ୱରଙ୍କ ଗୁଣ ବର୍ଣ୍ଣନା ରହିଥାଏ । ଏଣୁ ଦ୍ୱିତୀୟ ଓ ତୃତୀୟ ସ୍ଥାନରେ ଅଧିକାର କରିଥିବା ଏହି ଦୁଇଟି ପର୍ଯ୍ୟାୟରୁ ଜଣାଯାଏ ଯେ ପିଲାମାନେ ଈଶ୍ୱର ବିଷୟକ ଅଲୌକିକ ଓ ଚମକ୍ରାରିତା ପୂର୍ଣ୍ଣ ବିଷୟ ପଢ଼ିବାକୁ /ଶୁଣିବାକୁ ଅଧିକ ପସନ୍ଦ କରିଥାନ୍ତି ।

ଏହି ସର୍ବେକ୍ଷଣରୁ ଜଣାଯାଇଛି ଯେ, ଓଡ଼ିଶା ଶିଶୁ ସାହିତ୍ୟ ଜଗତରେ ସାଂପ୍ରତିକ କାଳରେ ବିଜ୍ଞାନରେ ଯେତେ ବିଜୟ ବାନା ଉଡ଼ିଲେ ମଧ୍ୟ ଈଶ୍ୱର ଚିନ୍ତାଯୁକ୍ତ ବିଷୟର ଚାହିଦା ତଥାପି ରହିଛି । ଅବଶ୍ୟ ସ୍ୱାଧୀନତା ପୂର୍ବରୁ ସେଥିରେ ଏହି ଈଶ୍ୱରୀୟ ଚିନ୍ତାର ମାତ୍ରା ଅଧିକ ଥିଲା ବୋଲି ପରିଲକ୍ଷିତ ହେବ । ମାତ୍ର, ଏବେଏହାର ମୂଲ୍ୟ ତଥାପି ରହିଛି ।

ବିଦଗ୍ଧ ସାହିତ୍ୟରେ 'ଆଧ୍ୟାତ୍ମିକତା'ର ସ୍ୱରୂପ ଯେପରି ଚତୁର୍ଦ୍ଦିଗ ଆଚ୍ଛନ୍ନ କରି ପକାଇଥାଏ, ଶିଶୁ ସାହିତ୍ୟ କ୍ଷେତ୍ରରେ କିନ୍ତୁ ଏହା କ୍ଷୁଦ୍ର ଓ ସଂକ୍ଷିପ୍ତ ରୂପରେ ସ୍ଥାନ ପାଇଥାଏ । ଏଥିରେ 'ତତ୍ତ୍ୱ'ର ଘନଘଟା ନାହିଁ, କି ବିଶ୍ଳେଷଣର ପାଣ୍ଡିତ୍ୟ ନାହିଁ । ଗୋଟାଏ ଭାବନା ବା ଘଟଣା ମଧ୍ୟରେ ଈଶ୍ୱରଙ୍କ କୀର୍ତ୍ତିକଳାପକୁ ସେ ସାଇଜରେ

ଗ୍ରହଣ କରିନିଏ । କ'ଣ କିରବା ଉଚିତ କ'ଣ ଅନୁଚିତ ପିଲାଟି ଜାଣିପାରେ । କେଉଁଟି ଶ୍ରେୟ -କରଣୀୟ- ଆପେ ଆପେ ଜାଣିବାର ଏବଂ ଜୀବନ କ୍ଷେତ୍ରରେ ତାକୁ ସେ ପ୍ରୟୋଗ କରିବାକୁ ଉଦ୍ୟମ କରେ ।

। ତିନି ।

ଓଡ଼ିଆ ଶିଶୁ ସାହିତ୍ୟରେ ସ୍ୱାଧୀନତା ପୂର୍ବକାଳରେ ଏହି ଐଶ୍ୱରୀୟ ଚିନ୍ତାର ପ୍ରାବଲ୍ୟ ଦେଖିବାକୁ ମିଳେନା । ଏପରିକି ପଦେଅଧେ ଗୀତରେ ମଧ୍ୟ ସେହି ଈଶ୍ୱରଙ୍କ କଥା ଆସି ଯାଉଥିଲା ଯଥା -

'ଆକାଶ ଦିନେ କି ସୁନ୍ଦର,
ତାହାକୁ ରଚିଲେ ଈଶ୍ୱର ।'

----- ----- -----

ପିଲାମାନଙ୍କ ମନରେ ଈଶ୍ୱର ପ୍ରୀତି ଜଗାଇ ପାରିବା ଥିଲା ସେତେବେଳକାର ଶିଶୁ ସାହିତ୍ୟିକମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ।

ବର୍ଷକ ମଧ୍ୟରେ ବିଭିନ୍ନ ପର୍ବପର୍ବାଣୀ ଉପଲକ୍ଷେ ଯେଉଁସବୁ କବିତା ରଚନା କରାଯାଇଥାଏ, ପ୍ରଥମେ ଏ ଦିଗରେ ଦୃଷ୍ଟି ଆକର୍ଷଣ କରେ । ଦୁର୍ଗାପୂଜା, କାଳୀପୂଜା, ଦୋଳପୂର୍ଣ୍ଣିମା, ଗଣେଶପୂଜା, ସରସ୍ୱତୀପୂଜା, ଶିବରାତ୍ରୀ ପ୍ରଭୃତି ଉତ୍ସବ ଉଦ୍ଦେଶ୍ୟରେ ଏହି ସବୁ କବିତା ରଚନା କରାଯାଇଥାଏ । ଏହିସବୁ କବିତା ପତ୍ରିକାର ପ୍ରଥମ ପୃଷ୍ଠା ମଣ୍ଡନ କରିଥାଏ । ଉତ୍ସବ ଉପଲକ୍ଷେ ରଚିତ ହୋଇଥିବାରୁ ଅଧିକାଂଶ କବିତା ଠାକୁର / ଠାକୁରାଣୀଙ୍କର ଶୁଭାଷିତ କାମନା କରାଯାଇଥାଏ । କରୁଣ କାମନା କରାଯାଇଥାଏ ।ଯଥା-

" ବଡ଼ ଠାକୁର ହେ ! ଟିକିଏ କରୁଣା
ଏ ଜୀବନେ ଯାଉ ମିଳି
ଟିକି ଠାରୁ ଟିକି ହୁଏ ପଛେ ମୋର
ଏତିକି ମାତର ଅଳି ।"

(ଚଉରା-ତୁରୀ-ମହୁରୀ-ଶ୍ରୀ ରମେଶ ଚନ୍ଦ୍ର ଭଞ୍ଜ/ ପୃ.୧୧)

କେତେକ କବିତାରେ ଠାକୁର /ଠାକୁରାଣୀଙ୍କର ଗୁଣ କୀର୍ତ୍ତନ କରାଯାଇ ସମଗ୍ର କାହାଣୀଟି (ଅଥବା ଗୋଟିଏ ଘଟନା) ଉପସ୍ଥାପିତ କରାଯାଇଥାଏ । ଏବଂ ଶେଷରେ

ତାଙ୍କର ଆର୍ଶୀବାଦ ଭିକ୍ଷା କରାଯାଇଥାଏ । ଯଥା-

"ପୁରାଣ କଥା ସେ ଆଜିକୁ ଅନେକ ବରଷ ତଳେ,
ପ୍ରଭୁ ରାମଚନ୍ଦ୍ର ସେତୁ ବାନ୍ଧିଥିଲେ, ସାଗର ତଳେ ।
ସେଇ ସେତୁପରେ ସଇନ ସାମନ୍ତ ସାଥିରେ ଧରି,
ଲଙ୍କା ଗଡ଼ ଜିଣି ସୀତା ଉଦ୍ଧାରିବେ ବିଚାର କରି,
କପି ଅଟେ ଯେତେ ଲାଗିଗଲେ ସବୁ କାମର ମାତି ।
---- ---- ----
ଗୁଣ୍ଡୁଚି ମୂଷାର ପିଠିରେ ଏ ଦେବତା ଅଙ୍ଗୁଳି ରେଖା
ସେଦିନୁ ଅଲିଭା ଧଳାଦାଗ ହୋଇ ରହିଲା ଲେଖା ।"
(ଝୁମୁକା/ଶ୍ରୀରାମ କୃଷ୍ଣ ନନ୍ଦା/ପୃ.୮୨)

କେବେ କବିତାରେ ନିଜର ଦୁଃଖ ଜଣାଣର ଆଧିକ୍ୟ ପ୍ରକାଶ ପାଇଥାଏ । ଏହି ଦୁଃଖକୁ ଦୂର କରିବା ପାଇଁ ପ୍ରାର୍ଥନା କରାଯାଇଥାଏ । ଲୋଭ, ହିଂସା ମନରୁ ଦୂର ହୋଇଯାଉ ବୋଲି କାମନା କରାଯାଏ । ଯଥା-

"ଅଶିଣ ଆସନ୍ତି ଆମରି ମାଆ,
ଆପଦେ ବିପଦେ ସବୁରି ସାହା,
ଦେବୀ ଦଶଭୁଜା ସିଂହ ବାହିନୀ,
ଚରଣେ ତାଙ୍କର କରୁ ଦାୟିନୀ,
ଦେବେ ବିଦ୍ୟା ବୁଦ୍ଧି ସାହସ ଭରି,
ଖୁସିରେ ଝୁମିବ ମରତ ପୁରୀ ।
ଲୋଭ, ହିଂସା ମନୁ ହୋଇଲେ ଶେଷ,
ସରଗୁ ବଳିବ ଆମରି ଦେଶ ।
(ଜଗତରସେ-ଶ୍ରୀ ଦେବାଶିଷ ଚକ୍ରବର୍ତ୍ତୀ/କାଉଁରିଚାନ୍ଦ/୬ଷ୍ଠ ବର୍ଷ/ଚତୁର୍ଥ ସଂଖ୍ୟା/ପୃ.୩)

କେତୋଟି କବିତାରେ ସମସ୍ତେ ସମାନ ବୋଲି ସ୍ୱୀକାର କରାଯାଇଛି । ସମସ୍ତେ ପରସ୍ପରର 'ସାହା' ବୋଲି କୋଳାକୋଳି ହୋଇ ହୋଲିରେ ରାଧାକୃଷ୍ଣ ମେଢ଼ ଆଗରେ ରଂଗ ବୋଳି ହୋଇଛନ୍ତି । ଯଥା-

'ଦୋଳ ବିମାନରେ ବୁଲି ବୁଲି
ରାଧାକୃଷ୍ଣ ଦିଅଁ ରଂଗବୋଳି ହୋଲି ।

ଭକତ ହାତରୁ ଭୋଗ ଖାଇ,
ଜାତି କି ଅଜାତି ଭୁଲି ଯାଇ ।
ସଭିଙ୍କୁ କରିବେ ଆପଣାର
ଲଗାଇ ତାଙ୍କର ଭକ୍ତି ଡ଼ୋର
ଆସରେ ସଭିଏଁ ଭାଇ-ଭାଇ
ଫଗୁ ପୁନେଇଁରେ ଗୀତ ଗାଇ
ଫଗୁ ରଂଗେ ହେବା ବୋଳାବୋଳି
ପର ଆପଣାକୁ କୋଳାକୋଳି ।'

(ଫଗୁଣ ଅଇଲା ଫଗୁଚିହ୍ନ-ଶ୍ରୀ କୁଞ୍ଜବିହାରୀ ସାହୁ/ସଂସାର /ମାର୍ଚ୍ଚ ସଂଖ୍ୟା- ୨୦୦୨/ପୃ:୨୫)

ସମାଜରେ ଧନୀ ଦରିଦ୍ର, ଅଭାବ ଓ ପ୍ରାଚୁର୍ଯ୍ୟର ସୃଷ୍ଟି ଦେଖି ପିଲାଟି ବ୍ୟଥିତ ହୋଇପଡ଼େ । ତା'ର ସାଂଗ କ୍ଷୀରିପୁରିରେ ଭାସିଲା ବେଳେ ସେ ଶାଗ କେରେ ବି ପାଉନାହିଁ କାହିଁକି ? ଏହି କଥା ସେ ବୁଝି ପାରେ ନାହିଁ । ତେଣୁ ସେ ଠାକୁରଙ୍କୁ ପ୍ରଶ୍ନ କରିଛି - ଏହି ଅସମତା କାହିଁକି ? କ'ଣ ତାଙ୍କର ଇଚ୍ଛା ?

ଯଥା - 'କାହିଁକି ପ୍ରଭୁ ହେ ଜଗା
ଏହି ଅନ୍ୟାୟ ତୁମ୍ଭର,
ଭାତ ମୁଁ ପାଉନି ଗୁଣ୍ଡେ,
ପଲଉ ଖାଉଛି ସାଙ୍ଗ ମୋର ।''
କାହିଁକି ପ୍ରଭୁ ହେ କାହିଁକି ? -ସମରେନ୍ଦ୍ର ମହାପାତ୍ର)

କେତେକ କବିତାରେ ଈଶ୍ୱରଙ୍କ ମହିମା ବର୍ଣ୍ଣନା ସହିତ ଦେଶାତ୍ମବୋଧର ଚିନ୍ତା ମଧ୍ୟ ଝରିଆସିଛି। କବି ଶେଖର ଚିନ୍ତାମଣି ମହାନ୍ତିଙ୍କ 'ଶିଶୁ ପ୍ରାର୍ଥନା' ଗୀତରେ ପଦେ ପଢ଼ନ୍ତୁ-

'ଅଜ୍ଞାନ ବାଳୁତ ମୁହିଁ କିଛି ଜାଣେ ନାହିଁ,
ଆଶିର୍ବାଦ କର ମୋତେ ପ୍ରଭୁ ଭାବଗ୍ରାହୀ ।

--- --- ---

'ରାମ କୃଷ୍ଣ ଜନ୍ମି କଲେ ଯେ ଦେଶକୁ ପୂତ,
କର ମୋତେ ସେ ଦେଶର ଉପଯୁକ୍ତ ସୁତ ।'

କେତୋଟି କବିତାରେ ସ୍ତୁତି ମଧ୍ୟରେ ତତ୍କାଳୀନ ଦୈବ ଦୁର୍ବିପାକର ଚିତ୍ର

ମଧ୍ୟ ଲକ୍ଷ୍ୟ କରାଯାଇଥାଏ । ଗତ ମହାବାତ୍ୟାରେ ପ୍ରଭାବ ମଧ୍ୟ ଶିଶୁ କବିତାରେ ପଡ଼ିଛି । ଯଥା -

" କିଦେଇ ପୂଜିବି ତବ ଆରାଧନା
କେଉଁଠି ଲେଖିବି ଝୋଟି ଆଳପନା
ପୂଜା ଫୁଲ କାହିଁ
ଭୋଗରାଗ ନାହିଁ
କି ଦେଇ କରିବି ଚରଚା ।
ଦେବୀ ମଣ୍ଡପ ପଡ଼ିଛି ଉପୁଡ଼ି
ପାଖେ କୁଢ଼ ତାର କେତେଟା ଖପୁରି
ଗତ ବରଷ ଯେ
ପଢୁଥିଲା ମନ୍ତ୍ର
ବସି କରି ତୁମେ ବେଦୀରେ
କେ ଗାଇବ ତୁମ
ବନ୍ଦନା ସେତ
ଭାସିଗଲା ମହାନଦୀରେ ।

(କିଦେଇ ପୂଜିବି ତୁମକୁ/ମନ ହୁଏ ମୋର-ଶ୍ରୀ ପ୍ରଫୁଲ୍ଲ କୁମାର ଗିରି/ପୁଲକ ପ୍ରକାଶନ/ଯାଜପୁର/ ୧୯୯୯/ପୃ.୧୨୨)

ଏହା ବ୍ୟତୀତ ଓଡ଼ିଶାର ପୁରପଲ୍ଲୀରେ ବହୁ ସଂଖ୍ୟାରେ ପଡ଼ି ରହିଥିବା କିମ୍ବଦନ୍ତୀ, ଲୋକ କାହାଣୀର କବିତା ରୂପରେ ଈଶ୍ୱରଙ୍କ ପ୍ରତି ଭକ୍ତିଭାବ ସୃଷ୍ଟି କରିଥାଏ ।

ଉଦାହରଣ ସ୍ୱରୂପ - ପ୍ରହଲ୍ଲାଦ ଓ ଧ୍ରୁବ କାହାଣୀ ପ୍ରଭୃତି ।

। ଚାରି ।

ଶିଶୁର ମନ କୋମଳ । ସେତେବେଳେ ଯେଉଁ ଛାପ ତା' ମନରେ ପଡ଼ିଥାଏ, ତାହାର କିୟଦଂଶ ଜୀବନ ସାରା ରହିଯାଏ । ଏଣୁ ପିଲା ଦିନର ଏହି ସବୁ ଈଶ୍ୱରଭକ୍ତି ମୂଳକ କବିତାର ପ୍ରଭାବକୁ ଅସ୍ୱୀକାର କରି ହେବ ନାହିଁ ।

ମାତ୍ର ଈଶ୍ୱର ଭକ୍ତି ମୂଳକ କବିତା ପିଲାକୁ ଯେପରି ଅଳସୁଆ ବା ଅକର୍ମଣ୍ୟ କରି ନ ପକାଏ, ସେଥିପ୍ରତି ଲକ୍ଷ୍ୟ ଦେବା ଆବଶ୍ୟକ । ଯଦି ଈଶ୍ୱର ସବୁ କରି ଦେବେ, ତେବେ ମୁଁ କାହିଁକି ଏତେ କାମ କରିବି ? ଏତେ ଦାୟିତ୍ୱ ବୁଝିବି ?

ଏହିପରି ଅବାସ୍ତବ ପ୍ରଶ୍ନ ଯେପରି ତା' ମନକୁ ଆଚ୍ଛନ୍ନ କରିନପକାଏ ! ଏଥିପ୍ରତି ଅଭିଭାବକ ତଥା ଶିକ୍ଷକମାନେ ଧ୍ୟାନ ଦେବା ନିହାତି ଆବଶ୍ୟକ ।

ପିଲାଦିନର କେତେକ ଭକ୍ତି ରସାତ୍ମକ କବିତା ପିଲାଟି ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ସ୍ମରଣ ରହିଥାଏ । ହୁଏତ ସେ ପିଲାଦିନେ ସେତେ ବୁଝିପାରୁ ନଥିଲା, ତା'ର ଗହନ ଅର୍ଥ । ବୟସ ବଢ଼ିବା ସଂଗେ ସଂଗେ ସେହି କବିତାର ଅର୍ଥକୁ କ୍ରମେ ବୁଝିଛି, ଅନୁଭବ କରୁଛି । କିନ୍ତୁ ପିଲାଦିନେ ଏହି ଭକ୍ତିରସାତ୍ମକ କବିତାକୁ ପଢ଼ିଥିଲେ, ମୁଖସ୍ଥ କରି ନଥିଲେ ଏବେ ସେ କ'ଣ ତାକୁ ବୁଝିବାକୁ ଚେଷ୍ଟା କରନ୍ତା ।

ଓଡ଼ିଆ ଶିଶୁ -ସାହିତ୍ୟର ଅନ୍ୟତମ ପ୍ରାଣ ପ୍ରତିଷ୍ଠାତା ସ୍ୱର୍ଗତ ରାମକୃଷ୍ଣ ନନ୍ଦଙ୍କର 'ଆହେ ଦୟାମୟ ବିଶ୍ୱ ବିହାରି' - ପ୍ରାର୍ଥନାଟି ଓଡ଼ିଶାର ପ୍ରାୟ ପ୍ରତି ସ୍କୁଲ ଓ ଘରେ ଘରେ ଏପର୍ଯ୍ୟନ୍ତ ବି ବୋଲା ଯାଉଛି । ଏଥିରେ କୌଣସି ନିର୍ଦ୍ଦିଷ୍ଟ ଧର୍ମ କଥା କୁହାଯାଇ ନାହିଁ । କିନ୍ତୁ ପିଲାଟିର ନୈତିକ ଜୀବନର ବିକାଶ ପାଇଁ ଅତି କମ୍‌ରେ ଅତି ସରଳ ଭାବରେ ଏଥିରେ ଯେଉଁ ବର୍ଣ୍ଣନା ରହିଛି - ତାହା ଶିଶୁ ମନକୁ ମୋହିତ କରିଛି । ସେଥିପାଇଁ ଏହି ପ୍ରାର୍ଥନାଟି କାଳଜୟୀ ହୋଇ ପାରିଛି ।

ଏବେବି ବାର୍ଦ୍ଧକ୍ୟ ଅବସ୍ଥାରେ ବହୁ ବ୍ୟକ୍ତି ପିଲାଦିନର ଏହି ପ୍ରାର୍ଥନାକୁ ଘଟନା ବିଶେଷରେ ଶୁଣି ହୁଅନ୍ତା,ଏପରି କାହିଁକି ? ଏଥିରୁ ଜଣାଯାଏ - ଆଧ୍ୟାତ୍ମିକ ଭାବ ସଂପନ୍ନ କବିତାର ପ୍ରଭାବ ଓଡ଼ିଆ ସମାଜରେ ବେଶ୍ ପଡ଼ିଛି ।

କେତେକ ଆଲୋଚକ ହୁଏତ ମତବ୍ୟକ୍ତ କରିପାରନ୍ତି ଯେ, ପିଲାଟି ଦିନରୁ ଈଶ୍ୱର /ଠାକୁର ,ଦେବତା ଆଦି କଥା ମୁଣ୍ଡରେ ପୂରେଇ ଦେଲେ ସେମାନଙ୍କ ମନର ସାଧାରଣ ବିକାଶ ବାଧାପ୍ରାପ୍ତ ହୁଏ ସବୁବେଳେ ଅନ୍ୟ ଉପରେ 'ଭରସା' କରିବା ପ୍ରବୃତ୍ତିଟି କିନ୍ତୁ ଜାଗି ଉଠେ । ଏହା ପରବର୍ତ୍ତୀ କାଳରେ ଏକ ସମସ୍ୟା ସୃଷ୍ଟି କରେ । କିନ୍ତୁ ଏହି ମତ କେତେଦୂର ଯୁକ୍ତିଯୁକ୍ତ ଓ ସତ୍ୟାଶ୍ରୟୀ ତାହା ବିଚାର କରିବାର କଥା ।

ଈଶ୍ୱରଙ୍କ ଠାରେ ନିଜକୁ 'ସମର୍ପଣ' କରିଦେଲେ ତାଙ୍କ ଉପରେ ଭରସା ରଖିଲେ 'ଆତ୍ମପ୍ରତ୍ୟୟ' ପିଲାଟି ମନରେ ସୃଷ୍ଟି ହୁଏ । ଏହି 'ପ୍ରତ୍ୟୟ' ଭାବ ହିଁ ସଫଳତାର ଚାବିକାଠି । ମାତ୍ର, ଏକଥା ସତ୍ୟ ଯେ, ଭକ୍ତିଧର୍ମୀ କବିତା ଗୁଡ଼ିକ ପିଲାଙ୍କ ଉପଯୋଗୀ ହେବା ବାଞ୍ଛନୀୟ । ଉଭୟ ଭାବ, ଭାଷା ଓ ଛନ୍ଦ ପ୍ରତି ରଚୟିତା ସତର୍କ ଦୃଷ୍ଟି ଦେବା ଆବଶ୍ୟକ । ଏହି ତିନିଗୋଟି ଉପାଦାନ ପରସ୍ପର ସହିତ ସଂପୃକ୍ତ ନ ହେଲେ, ଏହା ଶିଶୁ ଉପଯୋଗୀ ହୋଇପାରିବ ନାହିଁ ।

। ପାଞ୍ଚ ।

ଏବେ ଯେଉଁ ସବୁ ଆଧ୍ୟାତ୍ମଧର୍ମୀ, ଭକ୍ତିରସାତ୍ମକ କବିତା ସବୁ ରଚନା କରାଯାଉଛି - ସେସବୁ ପ୍ରାୟ ଗୋଟିଏ ପ୍ରକାରର । ତଥାପି, ଏହାର ଆବଶ୍ୟକତା ରହିଛି । ଏହିପରି କବିତାର ପ୍ରଭାବ ଉଭୟ ଶିଶୁ ଓ ବୟସ୍କ ବ୍ୟକ୍ତିଙ୍କ ଉପରେ ପଡୁଛି । ମାତ୍ର ଯୁବାବସ୍ଥାରେ ଏହି ପ୍ରଭାବ କିଞ୍ଚିତ ଦୁର୍ବଳ ହେବା ପରି ମନେ ହେଉଛି । କାରଣ, ଯୁବକଟି ସବୁକିଛି ଜାଣିଶୁଣି ମଧ୍ୟ ମନ୍ଦ କାର୍ଯ୍ୟ କରିବାକୁ ବାଧ୍ୟ ହେଉଛି । ତା'ର ଅସ୍ଥିର ମାନସିକତା ତାକୁ ସମସ୍ୟା ଜାଲରେ ବାନ୍ଧି ପକାଉଛି । ସେ ମୁଖସ୍ତ କରିଥିବା ପଣିକିଆ କୁ ଭୁଲି ଯାଉଛି । ତେଣୁ ସମାଜରେ ସମସ୍ୟା ଦେଖାଦେବା - ସ୍ୱାଭାବିକ କଥା । ତଥାପି ଶୈଶବ ଓ କୈଶୋର ଜୀବନର ଭକ୍ତି ରସାତ୍ମକ କବିତା ତା ମନ - ନଦୀରେ ଉବୁଟୁବୁ ହୁଏ । ସେ ଦ୍ୱନ୍ଦ୍ୱରେ ପଡ଼େ । ଏହି ଦ୍ୱନ୍ଦ୍ୱ ମଧ୍ୟ ଏକ ସୁଲକ୍ଷଣ । ଏହା ହିଁ ତା'ର ଶୈଶବ ଓ କୈଶୋରର ଜୀବନର ଈଶ୍ୱରଙ୍କ ପ୍ରତି ପ୍ରତିଷ୍ଠିତ ଧାରଣା । ସୁତରାଂ, ଶିଶୁ କବିତା କ୍ଷେତ୍ରରେ 'ଆଧ୍ୟାତ୍ମିକତା'କୁ କେମିତିକା ଅସ୍ୱୀକାର କରାଯିବ ? ❋

ବରିଷ୍ଠ ଅଧ୍ୟାପକ : ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଚାନ୍ଦବାଲି ମହାବିଦ୍ୟାଳୟ, ଚାନ୍ଦବାଲି,ଭଦ୍ରକ ।

# ଆଧ୍ୟାତ୍ମିକତା, ଜନଜୀବନ ଓ ଓଡ଼ିଆ ସାହିତ୍ୟ

☆ ଡ଼ଃ ଭାଗବତ ବେହେରା

"ଆଧ୍ୟାତ୍ମିକ'' ଶବ୍ଦର ଆକ୍ଷରିକ ଅର୍ଥ ହେଲା ଈଶ୍ୱର ସମ୍ବନ୍ଧୀୟ ଅନୁଚିନ୍ତ ।" ଆତ୍ମା ଈଶ୍ୱର ଚିନ୍ତାରେ ବ୍ୟାପୃତ ହେଲେ ଯେଉଁ ଭାବ ସଂଜାତହୁଏ ତାହାକୁ ଆଧ୍ୟାତ୍ମିକ ଭାବନା ବୋଲି କୁହାଯାଇଥାଏ । ଏହି ଭାବ ହିଁ ହେଉଛି ଆତ୍ମାନୁଭୂତି । ଅନୁଭୂତି ବିନା ଏହା ସମ୍ଭବ ହୋଇ ପାରେନା । ଜୀବ ମାତ୍ରେ ହିଁ ଅନୁଭୂତି ଅଛି । ମାନବୋତ୍ତର ଜୀବ, ଏପରିକି କୀଟ ପତଙ୍ଗ ଠାରୁ ଆରମ୍ଭ କରି ପଶୁ ପକ୍ଷୀ ପର୍ଯ୍ୟନ୍ତ ସଭିଙ୍କର ଅନୁଭୂତି ରହିଛି ମାତ୍ର ଶ୍ରେଷ୍ଠ ଜୀବ ମାନବର ଅନୁଭୂତି ସେମାନଙ୍କ ଠାରୁ ସଂପୂର୍ଣ୍ଣ ଭିନ୍ନ । ସେଥିପାଇଁ ଏକମାତ୍ର ଶ୍ରେଷ୍ଠ ପ୍ରାଣୀ ମନୁଷ୍ୟ ହିଁ ଗଭୀର ଭାବରେ ଅନୁଭବ କରିପାରେ ପ୍ରକୃତିର ସମସ୍ତ ତତ୍ତ୍ୱକୁ ଓ ତଥ୍ୟକୁ । ତା'ର ସେହି ଗଭୀର ଅନୁଭୂତିରେ ଆତ୍ମିକ ସ୍ତରରେ ଆଲୋଡ଼ନ ସୃଷ୍ଟି ହୁଏ - ଯାହାକୁ ଈଶ୍ୱାରୁନୁଭୂତି ବୋଲି କୁହାଯାଇଥାଏ । ତା'ର ଅନ୍ୟ ନାମ ହିଁ ହେଉଛି ଆଧ୍ୟାତ୍ମିକତା ।

ଈଶ୍ୱରଙ୍କ ପ୍ରତି ଗଭୀର ବିଶ୍ୱାସ, ଭକ୍ତି, ଅନୁରକ୍ତି, ସ୍ନେହ, ପ୍ରେମ ହିଁ ଆଧ୍ୟାତ୍ମ ଚେତନାର ଏକ ଏକ ଦିଗ । ଏହା କେହି କାହାରିକୁ ଶିଖାଇ ଦେଇ ନଥାଏ । ସ୍ୱତଃପ୍ରବୃତ୍ତ ଭାବରେ ହୃଦୟରେ ଏହା ଜାତ ହୁଏ । ମାନସିକ ରାଜ୍ୟକୁ ଏହା ଗତି କରି ଅନ୍ତରରେ ଏଭଳି ନାନ୍ଦିନିକ ଭାବ ଚେତନାକୁ ଜାଗ୍ରତ କରାଏ ଯେ, ଯାହାର ପ୍ରଭାବରେ ଜୀବ ଦିବ୍ୟାନନ୍ଦ ବା ବ୍ରହ୍ମାନନ୍ଦ ସୁଖକୁ ଲାଭ କରିଥାଏ । କ୍ଷମତା, ଧନ, ଯଶ, ରୂପ, ଗୁଣ, ଆଦି ଷଡ ଐଶର୍ଯ୍ୟ ପ୍ରାପ୍ତିରୁ ଯେଉଁ ସୁଖ ମିଳିଥାଏ, ତାହାଠାରୁ ହଜାର ହଜାର ଗୁଣରେ ଅଧିକ ସୁଖ ମିଳେ ଈଶ୍ୱର ଅନୁଚିନ୍ତାରୁ । ଦାନ, ଧର୍ମ, ଦୟା,କ୍ଷମା, ଗୁଣରେ ବିଭୂଷିତ ବ୍ୟକ୍ତି ଯେଉଁ ପୂଣ୍ୟ ଅର୍ଜନ କରେ, ତାହା ଠାରୁ ଅଧିକ ପୂଣ୍ୟ ଅର୍ଜନ କରିପାରେ ସେହି ବ୍ୟକ୍ତି ଯିଏ କି ଈଶ୍ୱରାର୍ପିତ ହୋଇ କର୍ମ କରିଥାଏ । ସେଥିପାଇଁ ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି, 'ତୁମେ ତୁମର ସକଳ କର୍ମକୁ ମୋ ନିକଟରେ ସମର୍ପଣ କରିଦେଇ କାର୍ଯ୍ୟ କରି ଚାଲ, ସେ କର୍ମରେ ଯଦି କିଛି ପାପ ତାପ ଥାଏ, ତା ହେଲେ ମୁଁ ତାକୁ ଧୋଇ ଦେଇ ତୁମକୁ ଯଥାଯଥ ଫଳ ପ୍ରଦାନ କରିବି ।'

ଆଧ୍ୟାତ୍ମିକତା ଈଶ୍ୱର ସମ୍ବନ୍ଧୀୟ ଅନୁଭୂତି କିମ୍ବା ଅନୁଚିନ୍ତା ହୋଇଥିଲେ ମଧ୍ୟ ସମସ୍ତେ ଏହାକୁ ଅନୁଭବ କରି ପାରନ୍ତି ନାହିଁ । ଏହି ଅନୁଭବ ସଭିଙ୍କ ପାଇଁ ସ୍ୱତଃପ୍ରବୃତ୍ତ

ନୁହେଁ । ଏଥିପାଇଁ ଶିକ୍ଷା ଦୀକ୍ଷାର ଯଥେଷ୍ଟ ଆବଶ୍ୟକତା ରହିଛି । ସେଥିପାଇଁ ମୁନି ଋଷିମାନେ ନାନା ପନ୍ଥା ନିର୍ଦ୍ଧାରଣ କରି ଯାଇଛନ୍ତି । ଈଶ୍ୱରଙ୍କୁ ଲାଭ କରିବା, ଈଶ୍ୱରଙ୍କୁ ଅନୁଭବ କରିବା କିମ୍ବା ଈଶ୍ୱରଙ୍କ ସମ୍ବନ୍ଧୀୟ ଜ୍ଞାନ ଅର୍ଜ୍ଜନ କରିବା ନିଶ୍ଚିତ ଏକ କଷ୍ଟକର ବ୍ୟାପାର । ତାହାକୁ ସରଳୀକରଣ କରି ସର୍ବସାଧାରଣଙ୍କ ନିକଟରେ ଯୋଗ ନିଷ୍ଠ ତପସ୍ୱୀ, ସାଧୁ, ସନ୍ଥ,ମୁନି, ଋଷିମାନେ ଏପରି ବାଢ଼ି ଦେଇ ଯାଇଛନ୍ତି ଯେ ଯୁଗେ ଯୁଗେ ମାନବ ସେହି ମାନଙ୍କର ପୂଣ୍ୟଫଳରୁ ହିଁ ଭଗବତ ଚେତନା ସମ୍ବନ୍ଧୀୟ ଜ୍ଞାନ ଅର୍ଜ୍ଜନ କରିପାରୁଛି । ତାହା ହେଉଛି ଆମ ମାନଙ୍କର ଶାସ୍ତ୍ରପୁରାଣ- ଯାହାକୁ ଆମେ ଆମ ଭାଷାରେ ସାହିତ୍ୟ ବୋଲି କହୁଛୁଁ । ଯୋଗ, ତପସ୍ୟା ଲବ୍‌ଧ ଜ୍ଞାନକୁ ଆମର ସାଧୁ ସନ୍ୟାସୀ ମାନେ ଆମର ବେଦ, ବେଦାନ୍ତ, ଉପନିଷଦ, ପୁରାଣ ମାନଙ୍କରେ ଏପରି ରୂପ ଦେଇ ଯାଇଛନ୍ତି, ଯେତେ ଦିନ ପର୍ଯ୍ୟନ୍ତ ମାନବ ସଭ୍ୟତା ତିଷ୍ଠି ରହିଥିବ ସେତେଦିନ ପର୍ଯ୍ୟନ୍ତ ସେ ସବୁର ମୂଲ୍ୟ କେବେ ବି ଊଣା ହେବ ନାହିଁ । ସେ ସୃଷ୍ଟି ସଂପଦ ତା'ର କଳାତ୍ମକ ଅଭିବ୍ୟକ୍ତି ପାଇଁ କାଳକୁ ଜୟ କରି ଯାଇଛି । ଶହ ଶହ ତପନିଷ୍ଠ ସନ୍ୟାସୀଙ୍କ ମୁଖ ନିଃସୃତ ବେଦବାଣୀ, ବାଲ୍ମିକୀ, ବ୍ୟାସ, ପରାଶର, ଜୈମିନି ଭଳି ମହାପୁରୁଷଙ୍କ ଦ୍ୱାରା ରଚିତ ରାମାୟଣ, ମହାଭାରତ, ଶ୍ରୀମଦ୍‌ଭାଗବତ ଆଦି ଗ୍ରନ୍ଥ ମାନଙ୍କରେ ଆଧ୍ୟାତ୍ମିକ ଚେତନା ସଂପର୍କରେ ଯେଉଁ ଚର୍ଚ୍ଚା କରାଯାଇଛି ତାହା ସବୁ ଯୁଗ , ସବୁ କାଳ ପାଇଁ ଚେତନାର ଆଦର୍ଶ ହୋଇ ରହିଯାଇଛି ।

ଜୀବ ସମାଜରେ ମନୁଷ୍ୟ ହିଁ ହେଉଛି ଏକମାତ୍ର ପ୍ରାଣୀ ଯିଏ ହସ, କାନ୍ଦ, ଦୁଃଖ, ସୁଃଖ, ସ୍ନେହ ଓ ପ୍ରେମକୁ ଠିକ୍ ବୁଝିପାରେ ଏବଂ ଏସବୁର ପରିପ୍ରକାଶ ମନୁଷ୍ୟର ମନ ରାଜ୍ୟରେ କିପରି ସଂଘଟିତ ହେଉଛି ତାହାକୁ ମଧ୍ୟ ସେ ଜାଣି ପାରେ । ଏ ସମସ୍ତ ଜାଣିବା ପାଇଁ ସେ ଦିବ୍ୟଜ୍ଞାନର ପ୍ରେରଣା ପାଇଥାଏ । ମନୁଷ୍ୟର ଏହିଦିବ୍ୟ ଜ୍ଞାନ ଦେଖି ସ୍ୱୟଂ ବିଶ୍ୱ ପିତା ମଧ୍ୟ ତୁଷ୍ଟ ହୋଇଥାନ୍ତି ।

"ମନୁଷ୍ୟ ଦେହେ ଦିବ୍ୟ ଜ୍ଞାନ
ଦେଖି ସନ୍ତୁଷ୍ଟ ଭଗବାନ ।''

ଦିବ୍ୟ ଜ୍ଞାନ ହିଁ ମାନବ ଶିଶୁକୁ ଶେଷ୍ଠ ପ୍ରାଣୀର ଆସନରେ ଆସୀନ କରିପାରିଛି । ମନୁଷ୍ୟ ଭାବରେ ସେ ଯେତେବେଳେ ଜନ୍ମ ଗ୍ରହଣ କରିଛି ସେ ନିଶ୍ଚିତ ଭାବରେ ଜାଣିଛି ପାରିଛି ଯେ 'ମାନବିକତା' ହେଉଛି ତା'ର ଚିର ସହଚର । ସତ୍ୟ, ଶାନ୍ତି, ଦୟା, କ୍ଷମା, ସେବା, ତ୍ୟାଗ, ସ୍ନେହ, ପ୍ରେମ, ଏସବୁ ହେଉଛନ୍ତି ମାନବିକ ତା'ର ଚିର ସାଥୀ। ଏହି ମାନବିକତା ଗୁଣମାନହିଁ ମନୁଷ୍ୟକୁ ଆଧ୍ୟାତ୍ମବାଦୀ କରାଇଥାଏ । ହିଂସା, ଦ୍ୱେଷ, କାମ, କ୍ରୋଧ, ନୃଶଂସତା, ପ୍ରତାରଣା, ଲୁଣ୍ଠନ, ଆଦି କର୍ମ ମାନବିକତା

ବିରୋଧି ଅଟେ । ଏହି କର୍ମ ସହ ଜଡ଼ିତ ମାନବ ସାଧାରଣରେ ମନୁଷ୍ୟ ବୋଲି ପରିଗଣିତ ହେଉଥିଲେ ମଧ ଆଧ୍ୟାତ୍ମ ଜଗତରେ ଏମାନେ ପଶୁ ଠାରୁ ହୀନ ଅଟନ୍ତି । ଏମାନେ ଆସୁରିକ ପ୍ରବୃତ୍ତି ଦ୍ୱାରା ବଶ ହେଉଥିବା ହେତୁ ଏମାନଙ୍କୁ ଅସୁରଆଖ୍ୟାରେ ଆଖ୍ୟାୟିତ କରାଯାଇଥାଏ। ମାନବିକତା ଦେବତ୍ୱ ସହ ସମାନ । ମନୁଷ୍ୟ ସମାଜରେ ବସବାସ କରୁଥିବା ସମସ୍ତ ମନୁଷ୍ୟ ଦେବଗୁଣ ବିଭୂଷିତ ନୁହଁନ୍ତି କିମ୍ୱା ସମସ୍ତେ ଅସୁରନୁହଁନ୍ତି । ପ୍ରତ୍ୟେକ ମାନବ ଶିଶୁ ଦେବତ୍ୱରୁ ଜାତ ହୋଇ ଗୁଣ କର୍ମ ଅନୁସାରେ ମାନବିକ ଓ ଆସୁରିକ ପ୍ରବୃତ୍ତିକୁ ଗ୍ରହଣ କରିଥାନ୍ତି । ପ୍ରତ୍ୟେକ କିପରି ଦେବତ୍ୱର ଅଧିକାରୀ ହୋଇ ପାରିବେ ସେଥିପାଇଁ ପରମ୍ପରାକ୍ରମରେ ଆମର ସାମାଜିକ ସାଂସ୍କୃତିକ ଧାରାରେ ଆଧ୍ୟାତ୍ମ ଚେତନାର ଯେଉଁସ୍ରୋତ ପ୍ରବାହିତ ହେଉଛି, ତାହାକୁ ଯିଏ ଯେଉଁ ଭଳି ଗ୍ରହଣ କରିପାରେ- ସେ ସେହିଭଳି ମହତ ଗୁଣରେ ଭୂଷିତ ମଧ୍ୟ ହୋଇପାରେ । ଈଶ୍ୱର ଉପାସନା, ଈଶ୍ୱରଙ୍କ ପ୍ରତି ଭକ୍ତି, ଈଶ୍ୱର ସନ୍ତୁଷ୍ଟ ହେଲା ଭଳି ବିଭିନ୍ନ କର୍ମ କରି ପାରିଲେ ମଣିଷ ଈଶ୍ୱର କୃପା ଲାଭ କରେ । ତାହା ହିଁ ହେଉଛି ବାସ୍ତବରେ ମନୁଷ୍ୟର ଧର୍ମ । ମନୁଷ୍ୟର କର୍ମର ଏହି ମାର୍ଗ ହିଁ ହେଉଛି ଆଧ୍ୟାତ୍ମ ଚେତନାର ଏକ ଏକ ଦିଗ । ମହାମୁନି ବ୍ୟାସ ତାଙ୍କ ମହାଭାରତ ଗ୍ରନ୍ଥରେ 'ଧର୍ମ' ଓ ଆଧ୍ୟାତ୍ମ ମାର୍ଗ ସଂପର୍କରେ ସୂଚନା ଦେଇ ଲେଖିଛନ୍ତି 'ଯଦି ବ୍ୟକ୍ତି ହିଂସା ଓ କ୍ରୋଧର ମାର୍ଗକୁ ପରିହାର କରି ଦାନ ,ଧର୍ମ ଆଦି କର୍ମରେ ମନୋନିବେଶ କରେ, ଦୁଃଖୀ ଦରିଦ୍ରଙ୍କ ସେବା କରେ, ପିତାମାତାଙ୍କୁ ଭକ୍ତି କରେ ତେବେ ସେ ନରଲୋକରେ ଯଥାଯଥ ଯଶ ଲାଭ କରେ ।" ସେହି ବ୍ୟକ୍ତି ହିଁ ବାସ୍ତବରେ ଧର୍ମୀ ଓ ଆଧ୍ୟାତ୍ମବାଦୀ ଅଟେ ।

ଅଦତ୍ତ ସ୍ୟାନୁ ପାଦାନାଂ ଦାନ
ଅହିଂସା ସତ୍ୟମକ୍ରୋଧ ଇଜ୍ୟା ଧର୍ମସ୍ୟ ଲକ୍ଷଣମ୍ ।

---- ---- ----

ମାତା ପିତା ଗୁରୁଣାଂଚ ପୂଜା ବହୁ ମତା ସମ
ଇହ ଯୁକ୍ତ ନର ଲୋକେନ ଯଶଚ ମହଦଶ୍ନୁତେଃ"

ଆଧାତ୍ମିକତା ଈଶ୍ୱର ଉପାସନା ହେଉ, ଦାନ, ଧର୍ମ, ଆଦି ପୂଣ୍ୟ କାର୍ଯ୍ୟ ହେଉ , ପିତା ମାତା ଗୁରୁଜନଙ୍କ ସେବା ହେଉ ଅଥବା ସ୍ନେହ , ପ୍ରେମ,କରୁଣା, ଦୟା, କ୍ଷମା ଆଦି ଗୁଣ ହେଉ ଏହା ଯେ ଯୁଗେ ଯୁଗେ ମାନବ ସମାଜକୁ ଯଥାର୍ଥ ଆଲୋକ ପ୍ରଦାନ କରି ଆସିଛି , ଏକଥାରେ ଦ୍ୱିମତ ହେବାର ନାହିଁ ।

ଆଧ୍ୟାତ୍ମ ଚେତନା କହିଲେ ସାଧାରଣ ଲୋକ ମାନେ ଈଶ୍ୱର ଉପାସନାକୁ ହିଁ ବୁଝିଥାନ୍ତି । ଏକମାତ୍ର ଈଶ୍ୱର, ଭଗବାନ, ପରଂବ୍ରହ୍ମ ହିଁ ହେଉଛନ୍ତି ଏ ସୃଷ୍ଟିର

ନିୟାମକ । ସେ ଏ ସୃଷ୍ଟିକୁ ସର୍ଜନା କରିଛନ୍ତି, ପାଳନ କରୁଛନ୍ତି ଏବଂ ସେ ଯେତେବେଳେ ଚାହିଁବେ ଏ ସୃଷ୍ଟିକୁ ସଂହାର ମଧ୍ୟ କରିପାରିବେ । ମାନବର ପ୍ରତ୍ୟେକ କର୍ମକୁ ସେହିଁ ନିୟନ୍ତ୍ରଣ କରୁଛନ୍ତି । ମାନବ କ'ଣ କରିବା ଉଚିତ, କ'ଣ କରିବା ଅନୁଚିତ, ତାହା ସେ ବିଭିନ୍ନ ମାର୍ଗରେ ମାନବ ସମାଜକୁ ଶିକ୍ଷା ଦେଇଥାନ୍ତି । ଏପରିକି ଆବଶ୍ୟକ ପଡ଼ିଲେ ସେ ନାନା ରୂପରେ ଅବତାର ଗ୍ରହଣ କରି ଏ ଧରାଧାମକୁ ମଧ୍ୟ ଓହ୍ଲାଇ ଆସନ୍ତି । ଲୋକାଳୟରେ ଦେହ ଗ୍ରହଣ କରି ତାଙ୍କର ବିବିଧ କର୍ମ ଦ୍ୱାରା ମାନବ ସମାଜକୁ ଯଥାର୍ଥ ଜ୍ଞାନ, କର୍ମ ସଂପର୍କରେ ସୂଚନା ଦେଇ ଯାଆନ୍ତି । ସେଇଥି ପାଇଁ ତ ଭଗବାନ ନର ରୂପରେ ରାମ, କୃଷ୍ଣ ଆଦି ରୂପ ପରିଗ୍ରହଣ କରି, ସାଧାରଣ ମନୁଷ୍ୟ ଭଳି ବହୁ ଦୁଃଖ କଷ୍ଟ ସହ୍ୟ କରି ମାନବ ସମାଜକୁ ସତ୍ୟ, ଶାନ୍ତି, ଦୟା, କ୍ଷମା, କରୁଣା, ସ୍ନେହ, ପ୍ରେମ ଦ୍ୱାରା ଦେବତ୍ୱ କିପରି ଲାଭ କରାଯାଇ ପାରେ, ସେ ସଂପର୍କରେ ନାନା ଶିକ୍ଷା ଦେଇ ଯାଇଛନ୍ତି । ରାମାବତାରରେ ସ୍ୱୟଂ ଭଗବାନ ରାମଚନ୍ଦ୍ର ରାଜକୁଳରେ ଜନ୍ମ ଗ୍ରହଣ କରି ମଧ୍ୟ ଯେଉଁ ଦୁଃଖମୟ ଜୀବନ ଯାପନ କରିଛନ୍ତି ପୁତ୍ର ହୋଇ ପିତୃ ସତ୍ୟ ପାଳନ କରି ଚଉଦ ବର୍ଷ ବନଗମନର କଷ୍ଟକୁ ହସି ହସି ବରଣ କରି ନେଇଛନ୍ତି । ଜଗତ୍‌ଜନନୀ ମା' ଲକ୍ଷ୍ମୀ ସୀତା ରୂପରେ ଜନ୍ମ ଗ୍ରହଣ କରି ଯେଉଁ ଲାଞ୍ଛନା ଯେଉଁ ପୀଡ଼ା ଭୋଗିଛନ୍ତି ତାହା ଯୁଗ ଯୁଗ ଧରି ମାନବ ସମାଜକୁ ନାରୀ ଧର୍ମ ସଂପର୍କରେ ଶିକ୍ଷା ଦେଇ ଚାଲିଛି । ଭଗବାନ ଶ୍ରୀକୃଷ୍ଣଙ୍କର ବହୁବିଧ ଲୀଳା କର୍ମମାନ ମାନବ ସମାଜ ନିମିତ୍ତ ସବୁ କାଳ ପାଇଁ ଆଦର୍ଶ ହୋଇ ରହିଛି। ଆମ ସାଂସ୍କୃତିକ ଚେତନାର ଉତ୍ସ, ଆମ ଆଧ୍ୟାତ୍ମିକ ଚେତନାର ପ୍ରାଣ ପିଣ୍ଡ, ଭକ୍ତି ଭାବନାର ଧାରା ସବୁ ଯୁଗ ଯୁଗ ପାଇଁ ସଂଚିତ ହୋଇ ରହିଯାଇଛି ଆମ ସାହିତ୍ୟ କୋଷ ଭିତରେ ଯାହାକୁ ପାଠ କରି ଯୁଗେ ଯୁଗେ ମନୁଷ୍ୟ ଅନୁଭବ କରିପାରୁଛି ଧର୍ମ କ'ଣ ? ପାପ କ'ଣ ? ପୂଣ୍ୟ କ'ଣ ? ମନୁଷ୍ୟ କ'ଣ କରିବା ଉଚିତ, କ'ଣ କରିବା ଅନୁଚିତ । କେଉଁ ମାର୍ଗରେ ଗତି କଲେ ସୁଫଳ ତଥା କେଉଁ ମାର୍ଗରେ ଗତି କଲେ ତାକୁ କୁଫଳ ପ୍ରାପ୍ତି ହେବ । ହଜାର ହଜାର ବର୍ଷ ଧରି ଆମର ସାମାଜିକ ଗୃହରେ ସାଇତି ହୋଇ ରହିଥିବା ବେଦ, ବେଦାନ୍ତ, ଉପନିଷଦ, ଗୀତା, କାବ୍ୟ, ପୁରାଣ, ନାଟକ ଆଦି ଆମକୁ ଏହି ଶିକ୍ଷା ହିଁ ଦେଇ ଆସୁଛି । ଏହି ଗ୍ରନ୍ଥ ସମୂହ ହିଁ ହେଉଛି ଆମ ଜନଚେତନାର ପ୍ରାଣ, ଧର୍ମ ଚେତନାର ଉତ୍ସ ତଥା ଆଧ୍ୟାତ୍ମିକ ଭାବନାର ମୂଳ ପିଣ୍ଡ । ହଜାର ହଜାର ବର୍ଷ ଧରି ଏହା ଆମର ସାମାଜିକ, ସାଂସ୍କୃତିକ ତଥା ମାନବିକ ସ୍ଥିତିକୁ ଦୃଢ଼ କରି ଆସିଛି ଏବଂ ଯେତେଦିନ ପର୍ଯ୍ୟନ୍ତ ଏ ସଭ୍ୟତା ତିଷ୍ଠି ରହିଥିବ, ସେତେଦିନ ପର୍ଯ୍ୟନ୍ତ ଏହା ମାନବ ସମାଜକୁ ଅମୃତର ବାରି ସେଚନ କରି

ତୁଷ୍ଟ କରି ଚାଲିଥିବ । ଯେଉଁ ସବୁ ଦିବ୍ୟଦ୍ରଷ୍ଟା ଗଣ ଏହାକୁ ସୃଷ୍ଟି କରିଥିଲେ ସେମାନେ ସାହିତ୍ୟ ସୃଷ୍ଟି ପାଇଁ ଏସବୁ ଗ୍ରନ୍ଥମାନ ପ୍ରଣୟନ କରିନଥିଲେ । ତାଙ୍କର ଏକାନ୍ତ ଉଦ୍ଦେଶ୍ୟ ଥିଲା ସେହି ଗ୍ରନ୍ଥମାନଙ୍କ ମାଧ୍ୟମରେ ମନୁଷ୍ୟ ସମାଜକୁ ମାନବିକତା ସଂପର୍କରେ ଶିକ୍ଷା ଦେବା । ଶରବିଦ୍ଧ କ୍ରୌଞ୍ଚ ପକ୍ଷୀର କରୁଣ ଧ୍ୱନି ବାଲ୍ମିକୀଙ୍କୁ ତପସ୍ୟାରୁ ସିନା ରହିତ କରିଥିଲା ହେଲେ, ସେହି କରୁଣର ଧ୍ୱନିରୁ ଯେ ବାଲ୍ମିକୀ ରାମାୟଣ ସୃଷ୍ଟି କରିପାରିବେ - ତାହା ସେ ନିଜେ ମଧ୍ୟ ଜାଣି ନଥିଲେ । ମାନବ ସମାଜ କିଭଳି ହେବା ଉଚିତ, ସ୍ନେହ, ପ୍ରେମ, ଦୟା, ମଣିଷର ବାସ୍ତବ ସହଚର ହେବା ଏକାନ୍ତ ବାଞ୍ଛନୀୟ , ଏହାକୁ ଅନୁଭବ କରି ବାଲ୍ମୀକି ରାମାୟଣ ରଚନା କରିଥିଲେ । ସେହିଭଳି 'ଶ୍ରୀମଦ୍ ଭାବଗତ' ଗ୍ରନ୍ଥ ମାନବ ସମାଜ ନିମିତ୍ତ 'ବାଞ୍ଛା କଳ୍ପତରୁ ସଦୃଶ' ବୋଲି ବ୍ୟାସ ଦେବ ବର୍ଣ୍ଣନା କରି ଯାଇଛନ୍ତି ଯାହାକୁ ପାଠ କଲେ, ଅଥବା ଶ୍ରବଣ କଲେ ମୃତ ପ୍ରାଣରେ ମଧ୍ୟ ଜୀବନ ସଂଚାର ହୋଇପାରେ ।

"ନିଗମ କଳ୍ପତରୋ ଗଳିତଂ ଫଳଂ
ଶୁକ ମୁଖାଦମୃତଦ୍ରବ୍ୟ ସଂଯୁତମ୍
ପିବତଃ ଭାଗବତ ରସମାଳୟଃ
ମୁହୁର୍ମୁହୁ ରସିକାଃ ଭୁବିଭାବୁକାଃ ।"

ମାନବ ଜୀବନ ଦୁର୍ଲ୍ଲଭ ଜୀବନ । ଏହି ଦୁର୍ଲଭ ଜୀବନକୁ ପୁଷ୍ଟ କରିବା ପାଇଁ ଆଧ୍ୟାତ୍ମିକ ଭାବନା ଏକାନ୍ତ ବାଞ୍ଛନୀୟ । ଆଧ୍ୟାତ୍ମିକତା ସଂପର୍କରେ ଜ୍ଞାନ, ଈଶ୍ୱର ଅନୁଚିନ୍ତା, ସତ୍‌କର୍ମ ତଥା ଯଥାର୍ଥ ମାନବ ସଂଜ୍ଞାଧାରୀ ମାନବଟିଏ ହେବା ପାଇଁ ଆମକୁ ସାହିତ୍ୟ ସହ ସଂପର୍କ ସ୍ଥାପନ କରିବାକୁ ପଡ଼ିବ । ପୁନଶ୍ଚ ସାହିତ୍ୟର ଏକ ସଂଜ୍ଞା ହେଉଛି - 'ମାନବ ଜୀବନ ହିଁ ସାହିତ୍ୟ' ଏଣୁ ଆଧ୍ୟାତ୍ମିକତା ସମାଜ ଜୀବନ ବା ମାନବ ଜୀବନ ଓ ସାହିତ୍ୟ ଯେ ଗୋଟିଏ ସରଳରେଖାର ଏକ ଏକ ବିନ୍ଦୁ - ଏହାକୁ ଅସ୍ୱୀକାର କରାଯାଇ ନପାରେ । ଧର୍ମ, ସଂସ୍କୃତି, ସମାଜ, ରାଜନୀତି, ଅର୍ଥନୀତି ସହ ନୈତିକତା, ମାନବିକତା, ଆଧ୍ୟାତ୍ମିକତା ସବୁ ସାହିତ୍ୟ ସହ ମିଶି ଏକାତ୍ମ ହୋଇଯାଇଛି । ସୃଷ୍ଟିର ପ୍ରଥମ ପ୍ରଭାତରୁ ଏହି ଧ୍ରୁବ ସତ୍ୟ ହିଁ ସାହିତ୍ୟ ମଧ୍ୟରେ ଝଙ୍କୃତ ହୋଇ ଆସିଛି ଏବଂ ଯେତେଦିନ ପର୍ଯ୍ୟନ୍ତ ମାନବ ସଭ୍ୟତା ତିଷ୍ଠି ରହିଥିବ, ସେତେଦିନ ପର୍ଯ୍ୟନ୍ତ ସାହିତ୍ୟ ରାଜ୍ୟରେ ଏହି ସତ୍ୟ ହିଁ ଝଙ୍କୃତ ହେଉଥିବ ।

ଧର୍ମପ୍ରାଣ ଆମ ଉତ୍କଳ ମାଟି ଓଡ଼ିଆ ଜନତା ତଥା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହି ସତ୍ୟ ଟି ସାହିତ୍ୟ ସୃଷ୍ଟିର ପ୍ରଥମ ପର୍ଯ୍ୟାୟରୁ ହିଁ ଲକ୍ଷ୍ୟ କରାଯାଇଛି । ପ୍ରାକ୍ ସାରଳା ଯୁଗରୁ ଆରମ୍ଭ କରି ସାରଳା, ପଞ୍ଚସଖା, ରୀତି, ଆଧୁନିକ ଓ ସର୍ବୋପରି

ଅତ୍ୟାଧୁନିକ କାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ସୃଷ୍ଟ ବିଭିନ୍ନ ସାହିତ୍ୟକୃତିରେ ଆଧ୍ୟାତ୍ମ ଚେତନା ତା'ର ସ୍ଥିତିକୁ ସୁଦୃଢ଼ କରି ପାରିଛି । ଆଧ୍ୟାତ୍ମଚେତନାର ଦେଶ ଓଡ଼ିଶାର ଗୋଡ଼ି, ମାଟି, ପାଣିପବନ ସବୁଠିଁ ଭଗବତ୍ ବାଣୀ ହିଁ ଝଙ୍କୃତ ହୋଇ ଉଠେ । ମହାମହିମ ମହାପ୍ରଭୁ , ବଡ଼ ଠାକୁର ଯେ ଦେଶର ଧର୍ମ, ସଂସ୍କୃତି, ଜନଜୀବନର ମୂଳପିଣ୍ଡ, ସେ ଦେଶର ସାହିତ୍ୟରେ ଆଧ୍ୟାତ୍ମିକତା ମୁଖ୍ୟ ସ୍ଥାନ ନେବା କିଛି ବିଚିତ୍ର କଥା ନୁହେଁ । ପଂଚଦଶ ଶତାବ୍ଦୀରେ ଆଦି କବି ସାରଳା ଦାସଙ୍କ ସୃଷ୍ଟ ବିଭିନ୍ନ ପୁରାଣ, ଷୋଡ଼ଷ ଶତାବ୍ଦୀରେ ପଂଚସଖାଙ୍କ ସୃଷ୍ଟ ପୁରାଣକୃତି ତଥା ଭଜନ ଜଣାଣ ମଧ୍ୟରେ ଆଧ୍ୟାତ୍ମିକତା ଯେ ଶ୍ରେଷ୍ଠ ଏବଂ ମୁଖ୍ୟ ପ୍ରସଙ୍ଗ ଥିଲା, ଏହା ପ୍ରତ୍ୟେକ ଓଡ଼ିଆ ଅନୁଭବ କରି ପାରିଥିବେ । ସାରଳା ଦାସଙ୍କ 'ମହାଭାରତ', ବଳରାମ ଦାସଙ୍କ 'ରାମାୟଣ', ଜଗନ୍ନାଥ ଦାସଙ୍କ 'ଭାଗବତ' ଓ ଅଚ୍ୟୁତା ନନ୍ଦଙ୍କ 'ହରିବଂଶ' ଗ୍ରନ୍ଥମାନ ଆମ ସାହିତ୍ୟ ଇତିହାସରେ ଯେ ମହାର୍ଘ୍ୟ ରତ୍ନ ତାହା ନୁହେଁ, ଏହି ଗ୍ରନ୍ଥ ଗୁଡ଼ିକ ଓଡ଼ିଆ ଜାତିର ଧର୍ମ, ସଂସ୍କୃତି ତଥା ସାମାଜିକ ଇତିହାସର ମୂଳପିଣ୍ଡ ଅଟେ । ଏହି ସବୁ ଗ୍ରନ୍ଥମାନଙ୍କରେ ଆଧ୍ୟାତ୍ମିକ ଭାବନା ଉପରେ ଯେଉଁ ସବୁ ବିଚାରମାନ କରାଯାଇଛି, ତାହା ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଶିକ୍ଷଣୀୟ ହୋଇଛି । ସେଇଥିପାଇଁ ଦିନ ଥିଲା ଯେତେବେଳେ କି ଓଡ଼ିଶାର ପ୍ରତ୍ୟେକ ଗ୍ରାମରେ ଏକ ଏକ ଭାଗବତ ଟୁଙ୍ଗି ଗଢ଼ି ଉଠିଥିଲା । ଉନବିଂଶ ଶତାବ୍ଦୀରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ଓଡ଼ିଶା ମାଟିରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବା ପାଇଁ କେତେକ ପ୍ରାଦ୍ରୀଙ୍କୁ ନିଯୁକ୍ତି କରିଥିଲେ । ସେହି ପାଦ୍ରୀମାନେ ଓଡ଼ିଶାର ଗାଁ ଗାଁ ବୁଲି ଖ୍ରୀଷ୍ଟଧର୍ମ ପ୍ରଚାରରେ ବ୍ୟର୍ଥ ହୋଇ ଲେଖିଥିଲେ "ଆମେ ଗାଁ ଗାଁ ବୁଲି ଯାହା ଦେଖିଲୁ ଓଡ଼ିଶା ମାଟିରେ ଖ୍ରୀଷ୍ଟଧର୍ମ ପ୍ରଚାର ଏକାନ୍ତ କଷ୍ଟକର ବ୍ୟାପାର । ଓଡ଼ିଶାରେ ଏଭଳି କୌଣସି ଗାଁ ନାହିଁ ଯେଉଁ ଗାଁରେ କି ଗୋଟିଏ ମୁଣ୍ଡରେ ଗ୍ରାମଦେବତୀ ମନ୍ଦିର ଅଥବା ଶିବ ମନ୍ଦିର ନଥିବ ଏବଂ ଅପର ମୁଣ୍ଡରେ ଭାଗବତ ଟୁଙ୍ଗିଟିଏ ନଥିବ । ପ୍ରତ୍ୟେକ ସନ୍ଧ୍ୟାରେ ଗ୍ରାମର ଆବାଳବୃଦ୍ଧବନିତା ସେହି ଟୁଙ୍ଗିରେ ମିଳିତ ହୋଇ ଶଙ୍ଖ, ମୃଦଙ୍ଗ, କରତାଳ ଆଦି ବଜାଇ ଭାଗବତ ଗ୍ରନ୍ଥ ଶୁଣିଥାନ୍ତି । ହରିବୋଲ ଧ୍ୱନି ଦେଇ ଗଗନ ପବନକୁ ମୁଖରିତ କରନ୍ତି । ଭଗବାନ କୃଷ୍ଣଙ୍କୁ ସେମାନଙ୍କ ଆତ୍ମା, ପ୍ରାଣ ମନେ କରି, ତାଙ୍କର ସମସ୍ତ କାର୍ଯ୍ୟ ତାଙ୍କୁ ସମର୍ପଣ କରିଥାନ୍ତି । ଏପରିସ୍ଥଳେ ସେ ଦେଶର ଲୋକମାନଙ୍କୁ କ'ଣ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଯାଇପାରେ ?" ଖ୍ରୀଷ୍ଟିୟାନ ପ୍ରାଦ୍ରୀମାନଙ୍କର ଏହି ମନ୍ତବ୍ୟ ହିଁ ପ୍ରମାଣ କରାଇ ଦିଏ ଯେ, ଏ ଦେଶର ଲୋକମାନେ କେତେ ମାତ୍ରାରେ ଆଧ୍ୟାତ୍ମବାଦୀ ଥିଲେ । ପ୍ରତ୍ୟେହ ସନ୍ଧ୍ୟାର ଧୂପାୟିତ ଆସର ମଧ୍ୟରେ ଭାଗବତ

ଟୁଙ୍ଗିରେ ଗ୍ରାମର ସକଳ ଜନତା ରୁଣ୍ଡିଭୂତ ହୋଇ, ଭାଗବତ ବାଣୀ ଶ୍ରବଣ କରି କେବଳ ଯେ ଭାବ ଗଦ୍‌ଗଦ ହୋଇ ପଡୁଥିଲେ ତାହା ନୁହେଁ, ସେହି ଭାଗବତ ବାଣୀ ହିଁ ତାଙ୍କ ଜୀବନର ମାର୍ଗକୁ ଶୃଙ୍ଖଳିତ କରୁଥିଲା । କେବଳ 'ଭାଗବତ' କିମ୍ବା 'ହରିବଂଶ' ନୁହେଁ ଏ ଯୁଗରେ ସୃଷ୍ଟ ଅସଂଖ୍ୟ ଭଜନ ଜଣାଣ, ଛାନ୍ଦ ଚଉତିଶା ଗୁଡ଼ିକରେ ମଧ୍ୟ ଆଧ୍ୟାତ୍ମ ଭାବନାର ସ୍ରୋତ ବହି ଯାଉଥିଲା ।

ପଂଚସଖା ଯୁଗ ପରେ କାବ୍ୟ ଯୁଗରେ ସୃଷ୍ଟ ଅଧିକାଂଶ କାବ୍ୟମାନ ଭକ୍ତି ଭାବନାକୁ ନେଇ ସୃଷ୍ଟି ହୋଇଛି । ଯଦ୍ୟପି ଶୃଙ୍ଗାର ରସର ପ୍ରାବଲ୍ୟ କାବ୍ୟ ସାହିତ୍ୟକୁ ଅଧିକ ଆବୋରି ବସିଥିଲା, ମାତ୍ର ଏ ସବୁ ସତ୍ତ୍ୱେ ମଧ୍ୟ କବି ସମ୍ରାଟ ଉପେନ୍ଦ୍ର ଭଂଜ, ଭକ୍ତ କବି  ଦୀନକୃଷ୍ଣ, ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାର, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଆଦିଙ୍କ କାବ୍ୟକୃତିରେ ଆଧ୍ୟାତ୍ମିକ ଚେତନାର ସ୍ରୋତ ସ୍ୱତଃ ପ୍ରବାହିତ ହୋଇ ଥିବାର ଲକ୍ଷ୍ୟ କରାଯାଇଛି ।

ଆଧୁନିକ ଯୁଗ ଓ ଆଧୁନିକ ଯୁଗରେ ସୃଷ୍ଟି ହୋଇଥିବା ସାହିତ୍ୟ ମଧ୍ୟରେ ଆଧ୍ୟାତ୍ମିକତାର ବିଡ଼ମ୍ବନା କେତେକାଂଶରେ ଦେଖିବାକୁ ମିଳିଥାଏ । ପ୍ରାଚ୍ୟ ସଂସ୍କୃତି ଉପରେ ପାଶ୍ଚାତ୍ୟ ସଂସ୍କୃତିର ପ୍ରାଧାନ୍ୟ ବିସ୍ତାର, ଆଧୁନିକ ଶିକ୍ଷାର ପ୍ରସାର ସାଂଗକୁ ଆଧୁନିକ ସଭ୍ୟତାର ଚାକଚକ୍ୟ, ଆଧୁନିକ ମନୁଷ୍ୟର ମନୋରାଜ୍ୟରେ ବିଳାସଭାବକୁ ଅଧିକ ଭାବରେ ଜାତ କରାଇଛି । ଫଳତଃ ଆଧୁନିକ ମନୁଷ୍ୟର ମନ ସ୍ୱତଃପ୍ରବୃତ୍ତ ଭାବରେ ଆଧ୍ୟାତ୍ମିକ ରାଜ୍ୟରୁ ଓହରି ଆସି ବିଳାସ ଜଗତ ମଧ୍ୟରେ ପ୍ରବେଶ କରି ଯାଇଛି । ଏସବୁ ସତ୍ତ୍ୱେ ମଧ୍ୟ ଆଧୁନିକ କବି ତା'ର କାବ୍ୟ କବିତାରେ ଭକ୍ତି ଭାବନାକୁ ରୂପାୟିତ କରିବାକୁ ଭୁଲି ନାହିଁ । ଆଧୁନିକ କବି ରାଧାନାଥ, ମଧୁସୂଦନ, ଗଂଗାଧର, ନନ୍ଦକିଶୋର ଆଦି ସ୍ରଷ୍ଟାଗଣ ସ୍ୱ ସ୍ୱ କାବ୍ୟ କବିତା ମଧ୍ୟରେ ବିଭୁ ସତ୍ତାକୁ ଯଥେଷ୍ଟ  ସମ୍ମାନ ଦେବା ସହ ଆଧୁନିକ ମଣିଷ ମନରେ ତାହା କିପରି ରେଖାପାତ କରି ପାରିବ, ସେଥିପାଇଁ ସତତ ଚେଷ୍ଟିତ ହୋଇଛନ୍ତି । ସେଥିପାଇଁ ସେମାନେ ଜଳେ, ସ୍ଥଳେ, ଆକାଶେ ସବୁଠି ଭଗବତ୍ ସତ୍ତାର ଅନୁଭବକୁ ତାଙ୍କ କାବ୍ୟ କବିତାରେ ରୂପ ଦେଇଛନ୍ତି । ଫୁଲ, ଫଳ, ତରୁଲତା, ନଦନଦୀ, କାନନ, କାନ୍ତାର ସବୁଠି ତାଙ୍କର ପ୍ରକାଶ ହୁଏ ବୋଲି କବି ବର୍ଣ୍ଣନା କରିଛନ୍ତି ।

"ଜଳ ସ୍ଥଳ ବନ ଗିରି ଆକାଶ
ତୁମ ଲୀଳା ସବୁଠାରେ ପ୍ରକାଶ ।"

ଭକ୍ତକବି ମଧୁସୂଦନଙ୍କ କବିତା ରାଜ୍ୟରେ ସର୍ବତ୍ର ବିଭୁ ବିଳାସ  ହିଁ ଲକ୍ଷ୍ୟ କରାଯାଇଥାଏ । ଏପରିକି ଛୋଟ ଛୋଟ ପିଲାଙ୍କ ଅନ୍ତରରେ ଭଗବତ ପ୍ରୀତି ଜାଗରଣ

କରିବା ପାଇଁ ସେମାନଙ୍କ ପାଇଁ ରଚିତ ପାଠ୍ୟପୁସ୍ତକ ବର୍ଣ୍ଣବୋଧରେ ସୂଚନା ଦେଇଛନ୍ତି ।

ଯାହା ମୁଁ କରଇ ଯାହା ମୁଁ ଚିନ୍ତଇ
ଯାହା ମୁଁ ଚିନ୍ତଇ ମନେ ।
ଜଗତର କର୍ତ୍ତା ପରମ ଈଶ୍ୱର
ଜାଣୁଛନ୍ତି ପ୍ରତି କ୍ଷଣେ ।
ମୋ ପାଖେ ଅଛନ୍ତି ଦିବସ ରଜନୀ
ମହାପ୍ରଭୁ ପରାତ୍ପର ।

ସେହି ମହାପ୍ରଭୁଙ୍କୁ ସ୍ମରଣ କରି ପ୍ରତ୍ୟେକ କାର୍ଯ୍ୟ କରିବାକୁ କବି କୋମଳମତି ଶିଶୁ ମାନଙ୍କୁ ଆହ୍ୱାନ କରିଛନ୍ତି ।

ସ୍ୱଭାବ କବି ଗଂଗାଧର ମଧ୍ୟ ଥିଲେ ଆଧୁନିକ କାଳର ଜଣେ ଆଧ୍ୟାତ୍ମବାଦୀ କବି । ତାଙ୍କର ରଚିତ ବିଭିନ୍ନ କାବ୍ୟ କବିତାରେ ଏହା ସ୍ପଷ୍ଟ ହୋଇ ଉଠିଥାଏ । ସମଗ୍ର ବିଶ୍ୱ ମହାମହିମାମୟ ପ୍ରଭୁଙ୍କ କୃପାରୁ ହିଁ ପରିଚାଳିତ ହେଉଛି । ସମଗ୍ର ଜଗତରେ ସେହି ମଧୁବୃଷ୍ଟି କରୁଛନ୍ତି ବୋଲି କବି ସୂଚନା ଦେଇଛନ୍ତି ।

"ବିଶ୍ୱ ଦେଖ ମଧୁମୟରେ ଜୀବନ
ବିଶ୍ୱ ଦେଖ ମଧୁମୟ ।"

ପ୍ରକୃତିର ତରୁଲତା, ନଦ, ନଦୀ, ଫୁଲ, ଫଳ ଠାରୁ ଆରମ୍ଭ କରି ପଶୁପକ୍ଷୀମାନଙ୍କ ମଧ୍ୟ ଦେଇ ପୃଥିବୀର ସର୍ବଶ୍ରେଷ୍ଠ ଜୀବ ମନୁଷ୍ୟର ପ୍ରେମ, ପ୍ରଣୟ, ସ୍ନେହ, ମମତା ସବୁଠିଁ ଈଶ୍ୱରଙ୍କର ଅନୁକମ୍ପା ପୂରି ରହିଛି ବୋଲି କବି ଦର୍ଶାଇଛନ୍ତି । କବିବର ରାଧାନାଥ ପାଶ୍ଚାତ୍ୟପ୍ରେମୀ କବି ହୋଇଥିଲେ ମଧ୍ୟ ତାଙ୍କ କାବ୍ୟ କବିତାରେ ଛତ୍ରେ ଛତ୍ରେ ଆଧ୍ୟାତ୍ମ ଚେତନାର ଧାରା ପ୍ରବାହିତ ହୋଇଛି ।

ଆଧୁନିକ ଯୁଗରେ ଆଧୁନିକ ସାହିତ୍ୟ ସୃଷ୍ଟି, ଓଡ଼ିଆ ସାହିତ୍ୟ ଜଗତରେ ନୂତନ ଚମକ ଆଣିଥିଲେ ହେଁ,ଏ ସାହିତ୍ୟରୁ ଆଧ୍ୟାତ୍ମିକ ଅନୁଚିନ୍ତା ଦୂରେଇ ଯାଇ ନାହିଁ । ମାନବ ସମାଜକୁ ଆଧ୍ୟାତ୍ମାନୁରାଗୀ ହେବା ପାଇଁ ଏ ଯୁଗର ସ୍ରଷ୍ଟା ମାନେ ଯଥେଷ୍ଟ ପ୍ରେରଣା ଦେଇଛନ୍ତି ।

"ବାଳ କାଳୁ ଧନ ଧର୍ମ ମୁଁ ସଂଚିବି
ଏଜୀବନ ଅନିଶ୍ଚିତ
କେଜାଣି କାହାର ଅବା ମୃତ୍ୟୁକାଳ
ହୋଇଯିବ ଉପସ୍ଥିତ ।"

ଧନ ରୂପକ ଧନ ହିଁ ମଣିଷର ଚିର ସହଚର ! ମନୁଷ୍ୟର ମର ଶରୀରକୁ କାଳ ଗ୍ରାସି ପାରେ, ମାତ୍ର ତା'ର ଧାର୍ମିକ ଅନୁଚିନ୍ତା କାଳ କାଳକୁ କାଳଜୟୀ ହୋଇ ରହିଯାଏ । ସେହି ଅନୁଚିନ୍ତା ହିଁ ସଂସାର ସାଗର ଅତିକ୍ରମ କରିବାରେ ସହାୟକ ହୋଇଥାଏ ।

'ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର ବାରିଧି ।"
ଏଥି ନିମନ୍ତେ ଭାଗବତ ବାଣୀ ମଧ୍ୟ ଅଛି -
ଧନ ଅର୍ଜନେ ଧର୍ମ କରି
ଧର୍ମେ ପ୍ରାପତ ନରହରି ।

କେବଳ ଆଧୁନିକ ଯୁଗର କାବ୍ୟ କବିତାରେ ନୁହେଁ, ଉପନ୍ୟାସ, ନାଟକ, କ୍ଷୁଦ୍ରଗଳ୍ପ ଆଦିରେ ମଧ୍ୟ ଆଧ୍ୟାତ୍ମ ଭାବନା ବେଶ୍ ଲକ୍ଷ୍ୟ କରାଯାଇଥାଏ । ବିଶେଷ କରି ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶକ ମଧ୍ୟରେ ଓଡ଼ିଆ ନାଟ୍ୟ ସାହିତ୍ୟ ହିଁ ଆଧ୍ୟାତ୍ମ ଆନ୍ଦୋଳନର ମୁଖ୍ୟ ଭୂମିକା ଗ୍ରହଣ କରିଛି । ସେ ସମୟରେ ରଚିତ ବହୁ ପୌରାଣିକ ନାଟକ ମାନ ରଚିତ ଓ ଅଭିନୀତ ହୋଇ ଓଡ଼ିଶାର ସାଧାରଣ ଜନତାଙ୍କ ମନୋରାଜ୍ୟରେ ଧର୍ମୀୟ ଅନୁଚିନ୍ତାର ଜାଗରଣ କରାଇବାରେ ଯଥେଷ୍ଟ ସହାୟକ ହୋଇଥିଲା ।

ବିଂଶ ଶତାବ୍ଦୀର ତୃତୀୟ ଦଶକରୁ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ସମୟ ମଧ୍ୟରେ ସୃଷ୍ଟ କାବ୍ୟ କବିତା ରାଜ୍ୟରେ ଆଧ୍ୟାତ୍ମଭାବନା ଫିକା ପଡ଼ି ଆସୁଥିଲେ ହେଁ ଗୋପବନ୍ଧୁ, ନୀଳକଣ୍ଠ, ବୈକୁଣ୍ଠନାଥ, ଗୋଦାବରୀଶ, ରାଧାମୋହନ ଗଡ଼ନାୟକ ଆଦି ବହୁ କବିଙ୍କ କାବ୍ୟ କବିତାରେ ଆଧ୍ୟାତ୍ମିକ ଚେତନାର ସ୍ରୋତ ସତତ ପ୍ରବାହିତ ହୋଇଛି । ଗୋପବନ୍ଧୁଙ୍କର 'କାରା କବିତା' 'ବନ୍ଦୀର ସ୍ୱଦେଶାନୁଚିନ୍ତା' 'ଗୋମାହାତ୍ମ୍ୟ' ଆଦି କବିତାର ଛତ୍ରେ ଛତ୍ରେ ଭଗବତ୍ ଚେତନାର ଧାରା ସ୍ୱତଃ ପ୍ରବାହିତ ହୋଇଛି । ସବୁଜ ଯୁଗର ସ୍ରଷ୍ଟା ବୈକୁଣ୍ଠନାଥଙ୍କ ବହୁ କବିତାରେ ଆଧ୍ୟାତ୍ମଚେତନାର ସ୍ୱର ଝଙ୍କୃତ ହୋଇ ଉଠିଛି ।

"ଜୀବନ ପାତ୍ର ମୋ ଭରିଛ କେତେ ମତେ
ନଦେଲ ବୋଲି କିଛି କହିବି କି ହେ ଆଉ,
ଜୀବନ ପ୍ରିୟତମ ହରିଛ ମୋ ଭରମ
ତରଣୀ ମୋର ତୁମ ସାଗରେ ଭାସି ଯାଉ ।"

କବି ବୈକୁଣ୍ଠନାଥଙ୍କ ଭଳି ଶରତ ଚନ୍ଦ୍ର, ଗୋଦାବରୀଶ. ମାୟାଧର ମାନସିଂ, ଆଦି ବହୁ କବିଙ୍କ କାବ୍ୟ କବିତାରେ ଆଧ୍ୟାତ୍ମିକ ଭାବନା ସ୍ପଷ୍ଟ ବାରି ହୋଇ ପଡ଼ିଥାଏ ।

ବିଂଶ ଶତାବ୍ଦୀର ଚତୁର୍ଥ ଦଶକ ପରେ, ବିଶେଷ କରି ସ୍ୱାଧୀନତା ପ୍ରାପ୍ତି ପରେ ଏ ଦେଶର ସାହିତ୍ୟ ରାଜ୍ୟରେ ବିରାଟ ପରିବର୍ତ୍ତନ ଲକ୍ଷ୍ୟ କରାଯାଇଛି । ପାଶ୍ଚାତ୍ୟ ଶିକ୍ଷାର ବହୁଳ ପ୍ରସାର ସାଂଗକୁ ପାଶ୍ଚାତ୍ୟ ସଂସ୍କୃତିର ଦ୍ରୁତ ବିକାଶ, କଳକାରଖାନାର ଅଗ୍ରଗତି ସାଂଗକୁ ବିଜ୍ଞାନର ନୂତନ ନୂତନ ଉଦ୍ଭାବନ ଓ ଆବିଷ୍କାର ମଣିଷର ମନୋରାଜ୍ୟରେ ଯେଉଁଭଳି ପରିବର୍ତ୍ତନ ଆଣିଛି, ସାହିତ୍ୟ ରାଜ୍ୟରେ ମଧ୍ୟ ସେହି ପରିବର୍ତ୍ତନ ଲକ୍ଷ୍ୟ କରାଯାଇଛି । ଏହା ସାଂଗକୁ ଦୁଇ ଦୁଇଟି ବିଶ୍ୱ ଯୁଦ୍ଧର ଯନ୍ତ୍ରଣା ଆଧୁନିକ ମଣିଷକୁ ଅଧିକ ଯନ୍ତ୍ରଣାସିକ୍ତ କରିଛି ଯାହା ଫଳରେ ମଣିଷ ଈଶ୍ୱରଙ୍କ ଉପରୁ ଆସ୍ଥା ହରାଇଛି । ଯନ୍ତ୍ରଣା ଦଗ୍ଧ ମଣିଷର ଅନ୍ତଃସ୍ୱର ହିଁ ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ତଥା ଓଡ଼ିଆ ସାହିତ୍ୟ ରାଜ୍ୟକୁ ଆବୋରି ବସିଛି । ପାଶ୍ଚାତ୍ୟ କବି ହପ୍‌କିନ୍‌ସ ଏଲିଏଟ୍ ଆଦିଙ୍କ ହତାଶା ନିରାଶା ମୃତ୍ୟୁ ଚେତନାର କଥା ରୂପ ପାଇଛି ଆମ ଓଡ଼ିଆ କାବ୍ୟ କବିତାରେ ଯାହାକୁ ଶଚ୍ଚି ରାଉତରାୟ, ଗୁରୁ ମହାନ୍ତି, ବେଣୁଧର ରାଉତ, ବିନୋଦ ନାୟକ,ଆଦି କବିମାନେ ପ୍ରଥମ କରି ପରୀକ୍ଷା କରଛନ୍ତି ସେମାନଙ୍କର କାବ୍ୟ କବିତାରେ । ଯୁଗ ଯନ୍ତ୍ରଣାକୁ ସ୍ୱର କରି ଆଧୁନିକ ଯୁଗର କବି ଗଣ କାବ୍ୟ କବିତା ରଚନାରେ ପ୍ରବୃତ୍ତ ହୋଇଥିଲେ ହେଁ, ଆଧ୍ୟାତ୍ମିକତାର ପ୍ରତିଫଳନ ସେମାନଙ୍କର କାବ୍ୟ କବିତାରେ ଅନିବାର୍ଯ୍ୟ ହୋଇପଡ଼ିଛି । କବି ଶଚ୍ଚିଦାନନ୍ଦ ରାଉତରାୟ ଆଧୁନିକ ଓଡ଼ିଆ କବିତାର ଜନକ ହୋଇଥିଲେ ବି ତାଙ୍କର କେତେକ କବିତାରୁ ଭଗବତ୍ ଭାବନାର ଉପଲବ୍ଧି ପାଠକେ ଅନୁଭବ କରି ପାରିଥା'ନ୍ତି ।ତାଙ୍କ 'ପାଥେୟ' କବିତାରୁ ଏକ ଉଦାହରଣ ଏଠାରେ ଉପସ୍ଥାପନା କରାଗଲା ।

"ସକଳ ତେଜି ମୁଁ ଆସିଛି ତୁମରି ଦୁଆରେ
ହେ ଜୀବନ ପ୍ରିୟ, ଗୋପନ ଅଭିସାରେ
ଶୂନ୍ୟ ମୋ ପାତ୍ର ଭରି ଦିଅ ତବଦାନେ
ନୀରବ ମୋ ବୀଣା ବାଜି ଉଠୁତବ ଗାନେ ।"

କବିଙ୍କର ଏହି ଦୁଇପଦ କବିତାରୁ ସ୍ପଷ୍ଟ ବାରି ହୋଇ ପଡ଼ିଥାଏ ଯେ, ଆଧୁନିକତାର ସକଳ ଚାକଚକ୍ୟ, ଧନ, କ୍ଷମତା, ବସ୍ତୁବାଦୀ ମଣିଷକୁ ଶାନ୍ତି ପ୍ରଦାନ କରିପାରିନାହିଁ । ଏସବୁ ପାଇ ମଧ୍ୟ ମନୁଷ୍ୟ ଅଣନିଃଶ୍ୱାସୀ ହୋଇ ପଡ଼ିଛି । ଶେଷରେ ଶାନ୍ତି ଟିକିଏ ପାଇଁ ସେସବୁ ତ୍ୟାଗ କରି ଧାଇଁ ଆସୁଛି ଈଶ୍ୱରଙ୍କ ନିକଟକୁ । ଈଶ୍ୱରଙ୍କ

କରୁଣା, ଅନୁକମ୍ପାରୁ ଯେଉଁ ସୁଖ ମିଳିବ, ସେ ସୁଖ ଧନ ସମ୍ପଦରେ କାହିଁ ? ତାଙ୍କରି କରୁଣା ହିଁ ପୂର୍ଣ୍ଣ କରିବ ମାନବର ଶୂନ୍ୟ ପାତ୍ର ।

ଉପନିଷଦୀୟ ଚିନ୍ତାଧାରାର ପ୍ରଭାବ ଆଧୁନିକ ତଥା ଅତ୍ୟାଧୁନିକ କବିଙ୍କୁ ବହୁ ପରିମାଣରେ କବଳିତ କରିଥିବାରୁ ବେଶ୍ ଲକ୍ଷ୍ୟ କରାଯାଇଥାଏ । ଆଧୁନିକ ମଣିଷ ହୋଇ ଆଧୁନିକତା ସହ ତାଳ ଦେଇ ଚାଲି ଚାଲି ଯାଉ ଯାଉ କବି ଆତ୍ମା ଯେତେବେଳେ ଥକି ପଡ଼ିଛି ସେତେବେଳେ ସେ ପଛକୁ ଫେରି ଚାହିଁଛି । ସେହିଠି ସେ ଶୁଣି ପାରିଛି ବେଦମନ୍ତ୍ରର ସ୍ୱର । ଇନ୍ଦ୍ରିୟୋତ୍ତର ଚେତନାରେ ନିମଜ୍ଜି ଯାଇ କବି ଯେଉଁ ଦିବ୍ୟାନୁଭୂତି ପ୍ରାପ୍ତ ହୋଇଛି ତାହାକୁ ସେ ରୂପ ଦେଇଛି ତା'ର କବିତାରେ । ପିଙ୍ଗଳାକୁ ଅନାଇ କବିତାଟିଏ ଲେଖୁ ଲେଖୁ କବି ବେଣୁଧର ହଜିଯାଇଛନ୍ତି କେଉଁ ଅଜଣା ରାଇଜରେ । ଶ୍ରୀମଦ୍ ଭାଗବତରେ ପିଙ୍ଗଳା ଚରିତ୍ର କାଙ୍କ କବିତାରେ ଉଭା ହୋଇଛି ଏକ ବିଚିତ୍ର ରୂପ ଦେଇ -

"ନୀଳ ନିଶିଥର ତାରା
କାମନା ଓପ୍ରତୀକ୍ଷା ଓ ଖିଳ ବରି ରଂଗ
ପିଙ୍ଗଳାର ଅନ୍ତରଂଗେ ସଂକ୍ରମୁଛି
ତା ଆତ୍ମାକୁ ଶାବଲ୍ୟେ କରୁଛି ପୀଡ଼ିତ
---- ---- ----
ଏତ ନୁହେଁ ପିଙ୍ଗଳାର ପ୍ରିୟଜନ
ଏ ସମୁଦ୍ର ଅନନ୍ତ ଘୋଷରେ
ସେ ଏକ ବିନ୍ଦୁର ମାତ୍ର ଅଶ୍ରୁସ୍ୱର ।"

ଆଧ୍ୟାତ୍ମ ଅନୁଚିନ୍ତା, ଭାଗବତ୍ ଭାବନା ଯେ ଏକ ଦିବ୍ୟ ଅନୁଭୂତି ତାହା ଆଧୁନିକ କବି ବେଶ୍ ଅନୁଭବ କରି ପାରିଛି ।ସେଥିପାଇଁ ଅତ୍ୟାଧୁନିକ କାଳରେ ରମାକାନ୍ତ, ସୀତାକାନ୍ତ, କମଳାକାନ୍ତ, ପ୍ରତିଭା ଶତପଥୀ ଆଦି ବହୁ ଆଧୁନିକ କବି, କବୟିତ୍ରୀଙ୍କ କବିତାରେ ଆଧ୍ୟାତ୍ମିକତାର ପଦ ଚିହ୍ନ ସ୍ପଷ୍ଟ ଅଙ୍କିତ ହୋଇଛି । ଆଧ୍ୟାତ୍ମିକ ଭାବ ଚେତନା ଜନିତ ପିପାସା ଏମାନଙ୍କୁ ଯେ ନିଶ୍ଚିତ ଗ୍ରାସ କରିଛି ଏ କଥାରେ ଦ୍ୱିମତ ହେବାର ନାହିଁ । ଭକ୍ତ କବି ମଧୁସୂଦନଙ୍କ ଭାଷାରେ -

"ଏ ପିପାସା ନୁହଇ ନିବାରି
ଅସାର ସଂସାର ଜଳେ ରିପୁଚୟ କୋଳାହଳେ
ନୁହେଁ ନିର୍ବାପିତକେବେ,ଏକା ଧର୍ମ ବାରି
ଶମଇ ଏ ମହାଅଗ୍ନି ଅମୃତ ସଂଚାରି ।'

ଈଶ୍ୱର ଅନୁରାଗ ରୂପୀ ପିପାସା ଅତ୍ୟାଧୁନିକ କବିଙ୍କୁ ଯେ ଆଧ୍ୟାତ୍ମଚେତନା ସମ୍ବଳିତ କବିତା ରଚନାରେ ବ୍ୟାପୃତ କରାଇଛି ଏହା ଅତ୍ୟାଧୁନିକ କବିତା ପାଠରୁ ବାରି ହୋଇ ପଡ଼ିଥାଏ । କବି ସୀତାକାନ୍ତଙ୍କ କେତେକ କବିତାରେ ଏହି ଭାବନା ସ୍ପଷ୍ଟ ହୋଇ ଉଠିଛି । ମିଥ୍ ଧର୍ମୀ କବିତା ରଚନାରେ କବି ସୀତାକାନ୍ତ ସିଦ୍ଧହସ୍ତ ଅଟନ୍ତି । ତାଙ୍କ 'ଆରଦୃଶ୍ୟ' କବିତାରେ ଭଗବତ୍ ଅନୁଭବର ଏକ ଚିତ୍ର ଦେଇ କବି ଲେଖିଛନ୍ତି -

"କିପରି ସହିବି ଏଇ ନିର୍ଜନ ମାୟା କୁହୁକ
ଯେଉଁଥିରେ ଆଉ କେହି ଅଂଶୀଦାର ହେବେ ନାହିଁ
ଦେଖେଇ ପାରିବି ନାହିଁ
କ'ଣ ମୁଁ ଦେଖିଛି ସେ ଦୃଶ୍ୟ ।"

ଭକ୍ତ କବି ମଧୁସୂଦନ ଠିକ୍ ଏହିଭଳି ପଦଟିଏ ଲେଖିଥିଲେ ତାଙ୍କର "ଋଷି ପ୍ରାଣେ ଦେବା ବିତରଣ" କବିତାରେ ।

"କେମନ୍ତେ ବର୍ଣ୍ଣିବି ସେହି ଭାଷାତୀତ ଭାବ
ଜୀବାତ୍ମାରେ ପରମାତ୍ମା -ଭୂମା ଆବିର୍ଭାବ
ନୁହେଁ ସେ ଧରାର ଦୃଶ୍ୟ, ଧରାର ଶବଦ
ସେ ଭାବ ନୁହଇଁ କ୍ଷୁଦ୍ର ଧରାର ସମ୍ପଦ ।"

କବୟିତ୍ରୀ ପ୍ରତିଭା ଶତପଥୀଙ୍କ କବିତାରେ ଆଧ୍ୟାତ୍ମାନୁଭୂତି ଅନେକତ୍ର ଅତ୍ୟନ୍ତ ଜୀବନ୍ତ ହୋଇ ଉଠିଛି । ନାରୀ କବି କୁନ୍ତଳା କୁମାରୀଙ୍କ ଭଳି ତାଙ୍କ କବିତାରେ ଈଶ୍ୱରାନୁଭବ ବେଶ୍ ଶାଣିତ । ଶେଫାଳୀ ଫୁଲକୁ ଲକ୍ଷ୍ୟ କରି କୁନ୍ତଳା କୁମାରୀ ତାହାରି ମଧ୍ୟରେ ଅନନ୍ତ ପ୍ରାଣପ୍ରିୟ ଭଗବାନଙ୍କ ସ୍ଥିତିକୁ ଅନୁଭବ କରିଥିଲେ ।

"ଅଛି ରମ୍ୟ ଉପବନ
ଅତିଫୁଟି ଚିରଦିନ
ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ
ମୋହିବି ମୋ ପ୍ରାଣପ୍ରିୟ ଦେବତାଙ୍କୁ ଉଲ୍ଲାସେ ।"

ସେହିଭଳି କବି ପ୍ରତିଭା ଶତପଥୀ ଅନୁଭବ କରିଛନ୍ତି, ରଙ୍ଗ ବେରଙ୍ଗର ବିଚିତ୍ର ଫୁଲ ମାଳାଟିଏ କିଏ ତାଙ୍କ ଗଳାରେ ଲମ୍ବାଇ ଦେଇଛି । ତାହାରି ମଧ୍ୟରେ ସେ ହଜି ଯାଇଛନ୍ତି । ଅନୁଭବ କରିଛନ୍ତି କାହାର ବିଚିତ୍ର ସ୍ପର୍ଶକୁ ।

"କି ବିଚିତ୍ର ସ୍ପର୍ଶଇଏ,   ଯାର
ଆଦୌ ଶରୀର ନାହିଁ
ସ୍ୱର ଶବ୍ଦ ନାହିଁ ।"

କବୟିତ୍ରୀ ବ୍ରହ୍ମୋତ୍ରୀ ମହାନ୍ତିଙ୍କ କବିତାରେ ଅନେକତ୍ର ଇଶ୍ୱରଙ୍କ ସତ୍ତା ବାରି ହୋଇ ପଡ଼ିଥାଏ ।

'ସେ ଆସୁ ବା ନ ଆସୁ ମୋ ପାଶେ
ମୋର କିବା ଯାଏ ଆସେ
ମୋ ଆନନ୍ଦ ଅବ୍ୟାହତ ଅପରିଚିତରେ
ଖୋଜି ପାଇବାର ଅଖଣ୍ଡ ବିଶ୍ୱାସେ ।"

ଅତ୍ୟାଧୁନିକ କବି ଅତ୍ୟାଧୁନିକ ଜଗତର ହୋଇଥିଲେ ବି ସେମାନେ ସମସ୍ତେ ଭାରତୀୟ ସାଂସ୍କୃତିକ ପରମ୍ପରାର ଉତ୍ତରାଧୀକାରୀ । ଭଗବତ୍ ଚେତନା, ଈଶ୍ୱରାନୁଭୂତି ଏ ଦେଶର ମାଟି, ପାଣି, ପବନ, ସବୁଠି ପ୍ରବାହିତ । ଏ ଦେଶ ସାସ୍କୃତିକ ଚେତନାର ପ୍ରାଣପିଣ୍ଡ ହେଉଛି ଆଧ୍ୟାତ୍ମିକ ଭାବନା । ଏ ଦେଶର ମାଟି, ପାଣି, ପବନ, ଆକାଶକୁ ନେଇ କବିତା ରଚନା କରୁଥିବା କବିଟିଏ ସେ ଚେତନାକୁ ତା' କବିତାରେ ରୂପ ନଦେବ ବା କେମିତି ? ସେହି ସୂତ୍ରରେ ପ୍ରତ୍ୟେକ ଅତ୍ୟାଧୁନିକ କବିଙ୍କ କାବ୍ୟ କବିତାରେ ଅଳ୍ପେ ବହୁତେ ଆଧ୍ୟାତ୍ମିକତାର ସ୍ୱରୂପ ଦେଖିବାକୁ ମିଳିଥାଏ ।

ଯୁଗେ ଯୁଗେ ସାହିତ୍ୟ ମାନବ ସମାଜକୁ ଧର୍ମ, ଦର୍ଶନ,ଶିକ୍ଷା, ସଂସ୍କୃତି, ରାଜନୀତି ସଂପର୍କରେ ଯଥାର୍ଥ ଶିକ୍ଷା ଦେଇଆସିଛି । ଆଜିର ଅତ୍ୟାଧୁନିକ କବିବର୍ଗଙ୍କ ସୃଷ୍ଟ ଅତ୍ୟାଧୁନିକ କାବ୍ୟ, କବିତା, ଗଳ୍ପ, ଉପନ୍ୟାସ ନାଟକରେ ଅତ୍ୟାଧୁନିକ ଜନ ଜୀବନର ବିଚ୍ଛିନ୍ନତାବାଦୀ ଚିନ୍ତା ଚେତନାର ସ୍ୱର ରୂପ ପାଉଥିଲେ ହେଁ, ଅତ୍ୟାଧୁନିକ ମଣିଷକୁ ଯଥାର୍ଥ ମାର୍ଗରେ ପରିଚାଳିତ କରିବା ପାଇଁ ଆଜିର ସାହିତ୍ୟରେ ଆଧ୍ୟାତ୍ମିକତା ଏକ ବିଶେଷ ସ୍ଥାନକୁ ଯେ ଆବୋରି ନେଇଛି ଏହା ନିର୍ବିବାଦରେ କୁହାଯାଇପାରେ । ❀

ମୁଖ୍ୟ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
**ନୀଳମଣି ମହାବିଦ୍ୟାଳୟ, ରୁପ୍‌ସା, ବାଲେଶ୍ୱର ।**

# ସାହିତ୍ୟ ଓ ସମାଜ ଜୀବନରେ ଆଧ୍ୟାତ୍ମିକ ଚେତନାର ଆବଶ୍ୟକତା

☆ ଡ଼ଃ ଆଶିଷ କୁମାର ଦାସ

'ଯୋ ବୈଭୂମା ତତ୍ ସୁଖଂ - ନାଳ୍ପେ ସୁଖମସ୍ତି' । ଯାହା ଅସୀମ, ଅନନ୍ତ ତାହା ହିଁ ସୁଖ, ତାହା ବିନା ଆନନ୍ଦ ନାହିଁ । ଆନନ୍ଦର ଅନ୍ୱେଷଣ ମଣିଷ ଅହରହ ଧରି ଚାହିଁଥାଏ ଏନ୍ତୁଡ଼ିଶାଳରୁ ଜୁଇ ଜଳିବା ପର୍ଯ୍ୟନ୍ତ ମାତ୍ର ସେ ଯାହା ଚାହିଁଲେ ବି, କିଛି ପାଏ ନାହିଁ - କେବଳ ପ୍ରତୀକ୍ଷା କରି ଚାରୋଟି ଅବସ୍ଥା (ବାଲ୍ୟ-କୈଶୋର-ଯୌବନ-ପୌଢ଼)କୁ ଅତିକ୍ରମ କରିଯାଏ । ଜନ୍ମ ଓ ମରଣ ଜଳଚକ୍ର ପରି ଚାଲେ । ବୁଦ୍ଧଦେବ ଏଥିପାଇଁ ଦୁଃଖ ଓ କାମନାକୁ ଦାୟୀ କରି ସଚେତନ କରାଇଥିଲେ । ଶାସ୍ତ୍ର, ପୁରାଣ, ଉପନିଷଦ ଇତ୍ୟାଦିରେ ଏହି କଥା କୁହାଯାଇଛି । ମାତ୍ର ଏହା ଏକ ସାଧନାର କଥା । ନିଷ୍କାମ ଭକ୍ତିଭାବ ହିଁ ଏହାର ମୂଳପିଣ୍ଡ । ଆଧ୍ୟାତ୍ମିକତା ହେଉଛି ଆତ୍ମିକ ଜ୍ଞାନ । ଏହାର ଅନୁଭବରେ ମଣିଷ ସସୀମରୁ ଅସୀମ ସ୍ତରକୁ ଉନ୍ନୀତ ହୁଏ । ଏଥିପାଇଁ ଯୋଗ ସାଧନାର ଆବଶ୍ୟକତା ରହିଛି । ଷଡ଼ରିପୁ ଏକାଦଶ ଇନ୍ଦ୍ରିୟକୁ ଆୟତ୍ତ କରିବା ଏହାର ଲକ୍ଷ୍ୟ। ତେଣୁ ଜୀବନକୁ ସରସ ସୁନ୍ଦର କରି ତୋଳିବା ପାଇଁ ସାହିତ୍ୟିକ ଚାହେଁ । ଏଥିରେ ସାମୂହିକ ଜୀବନର ବିକାଶ ଘଟେ ।

ବସ୍ତୁ କ୍ଷଣଭଙ୍ଗୁର, ଅନିତ୍ୟ । ତେଣୁ ଆଧ୍ୟାତ୍ମିକ ଚିନ୍ତା ହିଁ ଉଚିତ ମାର୍ଗ । ସାହିତ୍ୟ ଶବ୍ଦର ବ୍ୟୁତ୍ପତ୍ତି, ସହିତ +ଯ, 'ସମ୍ୟକ ହିତ ସାଧତି ଯ ସାହିତ୍ୟ' । ସ୍ରଷ୍ଟା ମଧ୍ୟ ଜଣେ ସାମାଜିକ ଜୀବ ମାତ୍ର ତା'ର ରହିଛି ସାମାଜିକ ଦାୟିତ୍ୱବୋଧ । ତେଣୁ ସମାଜ ଜୀବନକୁ ଗଠନ କରିବାରେ, ସୃଷ୍ଟିକୁ ଅଧିକ ସୁନ୍ଦର ସରସ କରିବା ପାଇଁ ସ୍ରଷ୍ଟାର ଆବେଦନ ଯୁଗ ଯୁଗ ଧରି ରହିଯାଏ ସୃଷ୍ଟିର ଅନ୍ତରାଳରେ । ତେଣୁ ଆଦି ଭୌତିକ ଚେତନା ହିଁ ପ୍ରେୟ ଶ୍ରେୟ ଓ ପରମ ପାଥେୟ । ସାହିତ୍ୟର ପରିସର ଖୁବ୍ ବ୍ୟାପକ । କାବ୍ୟ-କବିତା, ଗଳ୍ପ-ଉପନ୍ୟାସ, ନାଟକ, ପ୍ରବନ୍ଧ, ରମ୍ୟରଚନା ଇତ୍ୟାଦି ସାହିତ୍ୟର ଏକ ଏକ ଅଂଶ । ତେଣୁ ଏସବୁ କଳାରେ ଆଦିଭୌତିକ ଚିନ୍ତା ରହିଲେ ସୃଷ୍ଟି ହୁଏ କାଳଜୟୀ । କଳା ଗୋଟିଏ ଶ୍ରେଣୀ ପାଇଁ ବା ଗୋଟିଏ ଯୁଗ ଧରି ବଂଚେ ନାହିଁ । ଏହା ଚିର ପ୍ରବାହମାନ ଧାରା ପରି । ତେଣୁ ଆଧ୍ୟାତ୍ମିକ ମାର୍ଗ ହିଁ ଜୀବନର ପୂର୍ଣ୍ଣତା ଆଣେ, ଚିରନ୍ତନ ମୁକ୍ତି ଦିଏ, ଆତ୍ମା ପରମାତ୍ମାର ମିଳନ ହୁଏ । ଜୀବନ ହୁଏ

ସାର୍ଥକ । ଏହା ଖୁବ ଆୟାସସାଧ୍ୟ ହେଲେ ହେଁ ସାହିତ୍ୟିକର ଚେତନାରେ ହୁଏ ସହଜ ଓ ସାର୍ବଜନୀନ । ତେଣୁ ସୃଷ୍ଟିର ରହସ୍ୟ ଉନ୍ମୋଚିତ ହୁଏ । ମାୟା ବିଜଡ଼ିତ ପୃଥିବୀ ହୁଏ ଆକର୍ଷଣୀୟ, ମଣିଷ ଉନ୍ନୀତ ହୁଏ ସାଧାରଣସ୍ତରରୁ ଅସାଧାରଣ ସ୍ତରକୁ । ତା'ର ଚିନ୍ତା ହୁଏ ଦିବ୍ୟ. ଚେତନା ହୁଏ ମଧୁମୟ, ସସୀମରେ ସେ ସନ୍ଧାନ ପାଏ ଅସୀମର---'

"ସୀମାର ମାଝେ ଅସୀମ ତୁମି<br>
ବାଜାଓ ଆପନା ସୁର<br>
ଆମାର ମଧ୍ୟେ ତୋମାର ପ୍ରକାଶ<br>
ତାଇ ଏତ ମଧୁର ।

ଜନ୍ମ-ମୃତ୍ୟୁ ଦୁଃଖ ଦୈନ୍ୟ ରୋଗ ବ୍ୟାଧି ଯନ୍ତ୍ରଣା ଆଦି ଜୀବନର ବାସ୍ତବତା ଥିଲେ ହେଁ ତାହା ଦୂରୀଭୂତ ହୋଇଯାଏ ଏକ ନିଷ୍ଠ ସାଧନାର ଅନ୍ତରାଳରେ । ଆତ୍ମସମର୍ପଣ ରେ ହିଁ ସବୁ କିଛି ଦୂରୀଭୂତ ହୋଇଯାଏ । ଲୌକିକ ହୁଏ ଅଲୌକିକ । ଦେହ ହୁଏ ଦେହାତୀତ । ତେଣୁ କବି

"ଆମି ଯେରୂପେର ମଧ୍ୟେ କରେଛି ଅରୂପର ମଧୁପାନ<br>
ଦୁଃଖର ବକ୍ଷେ ପେଇଛି ଅମୃତେର ସନ୍ଧାନ ।

"Man is not body and mind but he is the spirit" ଆତ୍ମା ହିଁ ପରମାତ୍ମାର ଅଂଶ ବିଶେଷ ଜୀବନର ସାର୍ଥକତା ଲଭେ ଚିରନ୍ତନ ମୁକ୍ତି ପାଇଁ ଓ ପରମାତ୍ମାର ସତ୍ତା ସହ ଏକାତ୍ମ ହେବା । ଏଥିପାଇଁ ସାହିତ୍ୟର ବିଭିନ୍ନ ବିଭାଗର ଅଭିବ୍ୟକ୍ତିରେ ଚେତନା ରହିବା ବିଧେୟ ଯାହା ସମାଜକୁ ତଥା ଜୀବନକୁ କରିବ ମଧୁମୟ ମଂଗଳମୟ । ଏହା ବିନା ଶାନ୍ତି ନାହିଁ କି ତୃପ୍ତି ନାହିଁ । ବିକାଶ ନାହିଁ କି ଜୀବନର ପୂର୍ଣ୍ଣତା ନାହିଁ । ॐ

ବରିଷ୍ଠ ଅଧ୍ୟାପକ, ରାଜନୀତି ବିଜ୍ଞାନ ବିଭାଗ,<br>
ନୀଳମଣି ମହାବିଦ୍ୟାଳୟ, ରୁପ୍‌ସା

# ଆଧ୍ୟାତ୍ମିକତା ଓ ଆଧୁନିକ ଓଡ଼ିଆ ଉପନ୍ୟାସ

☆ ଡ଼ଃ. ରତିକାନ୍ତ ବେହେରା

ଆଧ୍ୟାତ୍ମିକତା ଏକ ବାଦ ନୁହେଁ କି ଦର୍ଶନ ନୁହେଁ- ଏହା ନିଛକ ଏକ ଚେତନା, ଏକ ଅନନୁଭୂତ ଅନୁଭବ । ବସ୍ତୁ ଜଗତରୁ ମନୋ ଜଗତକୁ ମଣିଷ ଚେତନାର ଜୟଯାତ୍ରା ହିଁ ଆଧ୍ୟାତ୍ମିକତା । ଭାଗବତର ବର୍ଣ୍ଣନା ଅନୁସାରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ତିନିଗୋଟି ତତ୍ତ୍ୱ ଉପରେ ଆଧାରିତ । ସେଗୁଡ଼ିକ ହେଲା ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ । ଏହି ତତ୍ତ୍ୱ କେବଳ ଭାଗବତରେ ସ୍ୱୀକୃତ ନୁହେଁ, ବେଦ ଉପନିଷଦ ଠାରୁ ଆରମ୍ଭ କରି ବିଭିନ୍ନ ପୁରାଣ ଓ ମୁନି ଋଷିମାନଙ୍କ ଦ୍ୱାରା ମଧ୍ୟ ସ୍ୱୀକୃତି ଲାଭ କରିଅଛି ।

ସାହିତ୍ୟରେ ଯେ କୌଣସି ବିଭାଗରେ ଯେକୌଣସି ବିଭବ ସ୍ଥାନ ପାଇବାର କିଛି ବୈଚିତ୍ର୍ୟତା ନାହିଁ । ତାହା ହିଁ ହେଉଛି ସାହିତ୍ୟର ଏକମାତ୍ର ସାଧନ, ଏକମାତ୍ର ଆଶ୍ରୟ ଓ ଏକମାତ୍ର ସତ୍ୟ । ଏହା ଦର୍ଶନ ତତ୍ତ୍ୱ, ଜ୍ଞାନ ବିଜ୍ଞାନ, ଧର୍ମ-ଧାରଣା, ସଭ୍ୟତା ସଂସ୍କୃତି ଇତ୍ୟାଦି ଯାବତୀୟ ବିଭବକୁ ବରଣ କରି ବିଭବଶାଳୀ ହୁଏ । ଏଥିରେ ଦର୍ଶନ ଓ ତତ୍ତ୍ୱ ଯେତିକି ସତ୍ୟ, ସଭ୍ୟତା-ସଂସ୍କୃତି-ସମାଜ-ବିଜ୍ଞାନ ମଧ୍ୟ ସେତିକି ମହତ୍ୱପୂର୍ଣ୍ଣ । ଏହି ପରିପ୍ରେକ୍ଷୀରେ ସାହିତ୍ୟର ଏକ ସମୃଦ୍ଧ ବିଭାଗ ତଥା ଆଧୁନିକ ଜନଜୀବନର ମହାକାବ୍ୟ ଉପନ୍ୟାସରେ ଆଧ୍ୟାତ୍ମିକ ଚେତନା ନିହିତ ଥିବା ନିତାନ୍ତ ସତ୍ୟ ।

ଉପନ୍ୟାସରେ ପ୍ରତିଫଳିତ ହେଉଥିବା ଏହି ସତ୍ୟକୁ ବିଶ୍ଳେଷଣ କରିବା ପୂର୍ବରୁ ଏହାର ସ୍ୱରୂପ ନିର୍ଣ୍ଣୟ କରିବା ଏକାନ୍ତ ପ୍ରୟୋଜନ । ଭାରତୀୟ ଜନ ଜୀବନରରେ ଆଧ୍ୟାତ୍ମିକତା ଏକ ଅଙ୍ଗୀଭୂତ ବିଭବ । ସେ ଜନପଦ ନିବାସୀ ହେଉ ବା ନଗରନିବାସୀ ହେଉ - ଆଧ୍ୟାତ୍ମିକତା ବିନା ଭାରତୀୟ ଜୀବନକୁ କଳନା କରାଯାଇ ପାରେନା । ପାଶ୍ଚାତ୍ୟ ବସ୍ତୁବାଦୀ ଚେତନା ଜନ ଜୀବନ ଉପରେ ବହୁଳ ପ୍ରଭାବ ବିସ୍ତାର କରିଥିଲେ ହେଁ, ଭାରତୀୟ ମୂଳତତ୍ତ୍ୱଟି ଏପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଛି ବୋଲି ମନେ ହୁଏ । ଆଧୁନିକ ଯୁଗରେ ୩୦ ଭାଗ ଲୋକ ଏହି ବସ୍ତୁବାଦୀ ବା ଭୋଗବାଦୀ ଚେତନାର କ୍ୟାନସରରେ ଆକ୍ରାନ୍ତ ହୋଇଥିଲେ ବି ଏଠାରେ ୭୦ ଭାଗ ଲୋକ ଅଧୁନା ଆଧ୍ୟାତ୍ମବାଦୀ ଚେତନାର ସଂଭ୍ରାନ୍ତ ବଳୟ ଭିତରେ ନିଜର ସ୍ୱଚ୍ଛ ପବିତ୍ର ଜୀବନ ନିର୍ବାହ କରୁଛନ୍ତି । ସାହିତ୍ୟ ଯେହେତୁ ମଣିଷର ସମତଳ ବାସ୍ତବତା ଓ

ଅନ୍ତଃନିହିତ ବାସ୍ତବତା ପରି ଦ୍ୱୈତ ବାସ୍ତବତାକୁ ନେଇ ଗତି ମୁଖର, ସେହି ହେତୁ ଏହି ଆଧ୍ୟାତ୍ମିକ ଚେତନାର ପ୍ରତିଫଳନ ଉପନ୍ୟାସରେ ରହିବା ନିତାନ୍ତ ସ୍ୱାଭାବିକ । ଏ ପ୍ରସଙ୍ଗରେ ସାହିତ୍ୟକୁ କେବଳ ସମାଜର ପ୍ରତିଫଳନ ବା mirror of the soceity କହିଲେ ଏହାର ଦୃଷ୍ଟି ଓ ଦିଗନ୍ତ ସୀମିତ ହୋଇଯିବାର ସମ୍ଭାବନା ରହିଛି ବରଂ ସାହିତ୍ୟ ସମଗ୍ର ବିଶ୍ୱର ପ୍ରତିଫଳନ ବା mirror of the universe କହିବା ଅଧିକ ଯୁକ୍ତିଯୁକ୍ତ ।

ପୁଣି ସାହିତ୍ୟ ମଣିଷ ଓ ସମାଜର ମାର୍ଗ ନିର୍ଦ୍ଦେଶକ ଯାହା ସମାଜକୁ ତା'ର ପଛରୁ ଆଲୋକବର୍ତ୍ତିକା ଧରି ଠିକ୍ ରାସ୍ତା ବା ଉଚିତ ମାର୍ଗଟି ଚିହ୍ନେଇ ଦିଏ ଏବଂ ଅନ୍ଧ ସମାଜର ହାତ ଧରି ବାଟ କଢ଼େଇ ନିଏ । ବିଶ୍ୱ ବ୍ରହ୍ମାଣ୍ଡର ନିଗୂଢ଼ ତତ୍ତ୍ୱ ଓ ସତ୍ୟ-ଶିବ-ସୁନ୍ଦରର ବାର୍ତ୍ତା ପ୍ରଚାର କରି ତା'ର ସୁପ୍ତ ଚେତନାକୁ ଉଜ୍ଜୀବିତ କରାଏ । ସାହିତ୍ୟର ଏହି ପୂତ ପବିତ୍ର ଧାରରେ ଅବଗାହନ କରି ସମାଜ ହୁଏ ଶୁଭ୍ର, ଶୌଚ ଓ ସତେଜ । ସମାଜରୁ ଯାବତୀୟ କଳୁଷ ଦୂର ହୁଏ ।

କେବଳ ଓଡ଼ିଆ ସାହିତ୍ୟ ନୁହେଁ, ସମଗ୍ର ଭାରତୀୟ ସାହିତ୍ୟରେ ଆଧ୍ୟାତ୍ମିକ ଚେତନା ଓ ଧର୍ମ ଭାବନା ତା'ର ମୂଳପିଣ୍ଡ ରୂପେ ଏଯାବତ୍ ନିହିତ । ଏହାର ଏକ ସୁଦୀର୍ଘ ଓ ବଳିଷ୍ଠ ପରମ୍ପରା ସାହିତ୍ୟକୁ କେବଳ ପରିପୁଷ୍ଟ କରିନାହିଁ, ଏହାର ଗତିପଥକୁ ଆହୁରି ପିଚ୍ଛଳ ଓ ସ୍ୱଚ୍ଛଳ କରି ଗଢ଼ି ତୋଳିଛି । ତେଣୁ ଆମ ଆଗରେ ସାହିତ୍ୟରେ ଆଧ୍ୟାତ୍ମିକ ତତ୍ତ୍ୱଟି ବେଶ୍ ପରିଚିତ । ସ୍ଥୂଳ ଅର୍ଥରେ ଆଧ୍ୟାତ୍ମିକତା କହିଲେ ଐଶ୍ୱରିକ ଭାବନା, ଐଶ୍ୱରିକ ଚେତନା, ପୂଜା ଅର୍ଚ୍ଚନା, ଉଭୟ ସାକାର ଓ ନିରାକାର ମାର୍ଗରେ ଉପାସନା ଏବଂ ଗୈରିକ ଚେତନାକୁ ହିଁ ବୁଝାଇଥାଏ । ତେଣୁ ସୂକ୍ଷ୍ମ ଅର୍ଥରେ ବିଚାର କଲେ ଏହାର ଅର୍ଥ ଆହୁରି ବ୍ୟାପକ, ଆହୁରି ପ୍ରଶସ୍ତ ବୋଲି ମନେ ହୁଏ । ଏହି ଶବ୍ଦ ସହିତ ଏକ ବୃହତ୍ତର ଅର୍ଥ ଦ୍ୟୋତନା ନିହିତ ଥିବାର ଜଣାଯାଏ । ପ୍ରଚଳିତ ଧାରଣାର ଏହାର ଅର୍ଥ ବହୁ ସୀମିତ ହୋଇଯିବାର ସଂଭାବନା ରହିଛି । ଉପନିଷଦର ବର୍ଣ୍ଣନା ଅନୁଯାୟୀ ଯେ ସର୍ବଭୂତରେ ନିଜକୁ ଓ ନିଜ ଭିତରେ ସକଳ ତତ୍ତ୍ୱକୁ ଉପଲବ୍ଧି କରେ ସେ ହିଁ ଯଥାର୍ଥ ଆଧ୍ୟାତ୍ମବାଦୀ । ସରଳ ଭାଷାରେ କହିବାକୁ ଗଲେ ବିଶ୍ୱସ୍ଥ ଯାବତୀୟ ସୃଷ୍ଟି ମଧ୍ୟରେ ଐଶ୍ୱରିକ ସତ୍ତାର ଉପଲବ୍ଧି, ସମସ୍ତ କାର୍ଯ୍ୟକାରଣ ମୂଳରେ ସେହି ସତ୍ତାର ଅନୁଭବ, ଉଭୟ ଜଡ଼ ଓ ଜୀବ ମଧ୍ୟରେ ନିଜକୁ ତଥା ଈଶ୍ୱରଙ୍କୁ ଅନୁଭବ କରିବା ହେଉଛି ଯଥାର୍ଥ ଆଧ୍ୟାତ୍ମିକତା ।

ଉପରୋକ୍ତ ପରିପ୍ରେକ୍ଷୀରେ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଆଧ୍ୟାତ୍ମିକ ଚେତନାର ବିଶ୍ଳେଷଣ କରାଯାଇପାରେ । ବାସ୍ତବରେ ଦେଖିବାକୁ ଗଲେ କାବ୍ୟ କବିତାରେ

ଏହି ଚେତନା ଯେତେ ବ୍ୟାପକ ଓ ବହୁଳ ପ୍ରୟୋଗ ହୋଇଛି, ଗଳ୍ପ ବା ଉପନ୍ୟାସ କ୍ଷେତ୍ରରେ ସେପରି ହୋଇ ନାହିଁ । କାରଣ ଉପନ୍ୟାସ ଏକ ଆଧୁନିକ କଳା । ପୁଣି ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଯୁଗର ପ୍ରତିଷ୍ଠା, ରେନେସାଁର ଅଭ୍ୟୁଦୟ ଓ ଯୁକ୍ତିବାଦୀ ଯୁଗରେଚିନ୍ତା ଚେତନା ଭିତରୁ ଏହାର ସୃଷ୍ଟି । ତେଣୁ ପ୍ରାଚୀନ କାବ୍ୟ ସାହିତ୍ୟ ଅପେକ୍ଷା ଆଧୁନିକ କଥା ସାହିତ୍ୟରେ ଏହାର ପ୍ରଭାବ ଓ ପ୍ରୟୋଗ ସେତେ ପର୍ଯ୍ୟାପ୍ତ ନୁହେଁ ବରଂ ସ୍ୱଳ୍ପ ।

ଓଡ଼ିଆ ଉପନ୍ୟାସ ସାହିତ୍ୟର ଉନ୍ମେଷ ଓ ଉଦ୍ଭବ ଫକୀର ମୋହନଙ୍କ ପୂର୍ବରୁ ହୋଇଥିଲେ ହେଁ ଫକୀର ମୋହନ ହିଁ ଓଡ଼ିଆ ଉପନ୍ୟାସର ଯଥାର୍ଥ ଜନକ । ତାଙ୍କ ରଚିତ ଚାରିଗୋଟି ଉପନ୍ୟାସ ମଧ୍ୟରୁ କେବଳ 'ଛ'ମାଣ ଆଠଗୁଣ୍ଠ' (୧୮୯୭)ରେ କିଞ୍ଚିତ୍ ଆଧ୍ୟାତ୍ମିକ ଚେତନାର ପରିଚୟ ପାଠକକୁ ମିଳିଥାଏ । ଉପନ୍ୟାସଟିରେ ସାମନ୍ତବାଦୀ ସମାଜର ଚିତ୍ର ମିଳୁଥିଲେ ହେଁ ପ୍ରକୃତବାଦ ବା Naturallism ର ପ୍ରବୃତ୍ତି ପରିଲକ୍ଷିତ ହୁଏ । ରାମଚନ୍ଦ୍ର ମଂଗରାଜ ଆଧ୍ୟାତ୍ମବାଦୀ ବା Spiritualism ର ଏକ ବିପରୀତ ମୁଖୀ ଚରିତ୍ର ଯିଏ ପରସ୍ୱାପହରଣ କରିବାର ପ୍ରବୃତ୍ତିକୁ ଚରିତାର୍ଥ କରିଛି । ବର୍ଷକ ଭିତରେ ଚବିଶଗୋଟି ଏକାଦଶୀ ପାଳନ କରୁଥିଲ ହେଁ ପାପପୂଣ୍ୟର ବିଚାର ମଂଗରାଜଙ୍କର ନାହିଁ । ମାଉସୀ ପୁଅ ଭାଇ ଶ୍ୟାମ ସୁନ୍ଦରର ପୈତୃକ ଲାଖରାଜ ୧୫ ଏକର ଜମି ଛଳନାରେ ଅପହରଣ କରିବା ଠାରୁ ଆରମ୍ଭ କରି ଭଗିଆ ସାରିଆଙ୍କୁ ତଳି ତଳାନ୍ତ କରିବା ଓ ବାଘସିଂହ ବଂଶର ଘର ପୋଡ଼ିଦେବା ସହିତ ଏକାଦଶୀ ପାରଣାର କୌଣସି ସଂପର୍କ ହିଁ ନାହିଁ । ଏ କେବଳ ଆଧାରିକ ପ୍ରବଞ୍ଚନା ମାତ୍ର । ଯଥାର୍ଥ ପାପପୂଣ୍ୟ ଓ ଭଲମନ୍ଦର ଉପଲବ୍ଧି ପାଇଁ ଲେଖକ ଆଉ ଏକ ମହନୀୟ ଚରିତ୍ରର ଅବତାରଣା କରିଛନ୍ତି । ସେ ହେଉଛନ୍ତି ସାଆନ୍ତାଣୀ – ଖୋଦ୍ ମଂଗରାଜଙ୍କର ବିବାହିତା ଧର୍ମପତ୍ନୀ । ଏହି ଚରିତ୍ରଟିକୁ ପାଠକ ଚିହ୍ନେ ତା'ର କୋମଳ ହୃଦୟର ଶୀତଳ ସ୍ପର୍ଶ ଭିତରୁ । ଉପନ୍ୟାସ ପାଠର ବହୁ ବର୍ଷ ପରେ ଯଦି କେହି ଜଣେ ପାଠକ ଉପନ୍ୟାସଟିକୁ ସାମଗ୍ରିକ ଆକଳନ କରିବସେ ଓ ଥରେ ମନେ ପକାଏ-ତାହେଲେ ତା' ସାମ୍ନାରେ ଯେଉଁ ନିରୀହ କୋମଳ ମୁହଁଟି ଝଲସି ଉଠେ, ସେ ଆଉ କେହି ନୁହଁନ୍ତି ସାଆନ୍ତାଣୀ । କିନ୍ତୁ ଉପନ୍ୟାସଟିରେ ସାଆନ୍ତାଣୀଙ୍କର ବର୍ଣ୍ଣନା ସେତେବେଶୀ ହୋଇନାହିଁ । ସେହି ସୀମିତ ବର୍ଣ୍ଣନା ଭିତରେ ଚରିତ୍ରଟିକୁ ଖୁବ୍ ବେଶୀ ମହନୀୟା ହୋଇଯାଇଛି । ଖାଲି ଗୈରିକ ପିନ୍ଧି ସଂସାର ବିରାଗୀ ହେଲେ କେହି ଜଣେ ଯଥାର୍ଥ ଆଧ୍ୟାତ୍ମିକ ହୁଏ ନାହିଁ । ସେଥିପାଇଁ ଜୀବେ ଦୟା ଓ ସମଭାବାପନ୍ନ ହୃଦୟବତ୍ତାର ଆବଶ୍ୟକତା ରହିଛି । ପର ଦୁଃଖରେ ଦୁଃଖୀ ଏବଂ ନିଜକୁ ପୀଡ଼ିତ

ଆତ୍ମାର ଅବସ୍ଥାରେ ଅବସ୍ଥାପିତ କରି ମାନବିକତାର ପରିଚୟ ଦେବା ହିଁ ଯଥାର୍ଥ ଆଧ୍ୟାତ୍ମବାଦୀ । ସାଆନ୍ତାଣୀଙ୍କ  ସଂପର୍କରେ ଲେଖକଙ୍କର ବର୍ଣ୍ଣନା ଏହିପରି -

"ତାଙ୍କ ଠାରେ ଧୂଆ ମୂଳା ଅଧୂଆ ମୂଳା ସମାନ । ତାଙ୍କୁ ଯେ ମାନିଲା ଭଲ, ଯେ ନ ମାନିଲା ସେ ମଧ୍ୟ ଭଲ । କେହି ଦଶପଦ ଗାଳି ଦେଉ, ଜାଡ଼ି ହାଉଡ଼ି  ପରି ଥାଆନ୍ତି । ଶାଳଗ୍ରାମର ଶୋଇବା ପରି ତାଙ୍କ ହସକାନ୍ଦ କେହି ଜାଣି ପାରିବେ ନାହିଁ ।

ପୁଣି-

"ଉଆସ ମଧ୍ୟରେ କାହାରି ବେମାର ହେଲେ ଦିନ ନାହିଁ, ରାତି ନାହିଁ ଜଗି ବସି ସେବା କରନ୍ତି । ବେମାରି ସମୟରେ ପୋଇଲି ହେଉ ବା ବୋହୂ ହେଉ, ନାହିଁ କରୁ କରୁ ଗୋଡ଼ରେ ହାତରେ ହାତ ବୁଲେଇ ଦେବେ । ବାହାରେ ହେଉ, ଘରେ ହେଉ, କେହି ଉପାସ ଥିଲେ ତାକୁ ନ ଖୁଆଇ ଜଳ ଛୁଅନ୍ତି ନାହିଁ ।''

ସୁଖ ଦୁଃଖରେ ସମଭାବ ପ୍ରଦର୍ଶନ କରୁଥିବା ମଣିଷ ପ୍ରକୃତ ଯୋଗୀ ବୋଲି ଗୀତାର ଦ୍ୱିତୀୟ ଅଧ୍ୟାୟରେ ବର୍ଣ୍ଣିତ ଅଛି । ସେ ଆତ୍ମାରେ ପର ଅପର ଭେଦାଭେଦ ଦେଖେ ନାହିଁ । ସବୁ ଜୀବ ମଧ୍ୟରେ ଐଶ୍ୱରିକ ସତ୍ତାକୁ ଅନୁଭବ କରି କାର୍ଯ୍ୟପନ୍ଥା ଗ୍ରହଣ କରେ । ଏହି ତତ୍ତ୍ୱର ଯଥାର୍ଥ ପରିପ୍ରକାଶ ଘଟିଛି ସାଆନ୍ତାଣୀଙ୍କ ନିକଟରେ ।

ଫକୀର ମୋହନଙ୍କ ଉତ୍ତରକାଳୀନ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଅତ୍ୟନ୍ତ ସଂସ୍କାରଧର୍ମିତା ଲକ୍ଷ୍ୟ କରାଯାଏ । ଫକୀର ମୋହନ ସମାଜ ସଂସ୍କାରର ଯେଉଁ ମୂଳଦୁଆ ପକାଇଥିଲେ କଥା ସାହିତ୍ୟ ମାଧ୍ୟମରେ ତା'ର ପୂର୍ଣ୍ଣ ପରିପ୍ରକାଶ ଘଟିଛି ସ୍ୱାଧୀନତା ପୂର୍ବବର୍ତ୍ତୀ ଉପନ୍ୟାସ ସାହିତ୍ୟରେ । ମୁଖ୍ୟତଃ ୧୯୩୦ ମସିହା ଭିତରେ ଯେତେଗୁଡ଼ିଏ (ପ୍ରାୟ ୫୦ ଖଣ୍ଡ) ଉପନ୍ୟାସ ଓଡ଼ିଆ ସାହିତ୍ୟରେ ସୃଷ୍ଟି ହୋଇଛି, ସେଥିରେ ମୁଖ୍ୟ ଦିଗଟି ହେଉଛି ସଂସ୍କାରଚେତନା । ଉପରୋକ୍ତ କାଳଖଣ୍ଡରେ ଯେଉଁ ପ୍ରମୁଖ ଔପନ୍ୟାସିକଗଣ ନଜରକୁ ଆସନ୍ତି, ସେମାନଙ୍କ ମଧ୍ୟରେ ଚିନ୍ତାମଣି ମହାନ୍ତି, କୁନ୍ତଳା କୁମାରୀ ସାବତ, ନନ୍ଦ କିଶୋର ବଳ, ରାମଚନ୍ଦ୍ର ଆଚାର୍ଯ୍ୟ, ଦୟାନିଧି ମିଶ୍ର, ଉପେନ୍ଦ୍ର କିଶୋର ଦାସ,ଗୋଦାବରୀଶ ମିଶ୍ର, ଚକ୍ରଧର ମହାପାତ୍ର ମୁଖ୍ୟ ଆସନ ଦାବୀ କରନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ପୁଣି ଐତିହାସିକ ଉପନ୍ୟାସ ରଚନାରେ ବ୍ୟାପୃତ ଥିବା ଜଣାଯାଏ । ଏହି ସମୟରେ ରଚିତ ହୋଇ ଥିବା ସଂସ୍କାରଧର୍ମୀ ଉପନ୍ୟାସ ଗୁଡ଼ିକ ମଧ୍ୟରେ ଦୁଇ ପ୍ରକାର ସଂସ୍କାର ଚେତନା ପରିଲକ୍ଷିତ ହୁଏ । ଗୋଟିଏ ହେଲା ଧାର୍ମିକ ସଂସ୍କାର ଓ ଅନ୍ୟଟି ସମାଜ ସଂସ୍କାର । ଧାର୍ମିକ ସଂସ୍କାର କ୍ଷେତ୍ରରେ ତତ୍‌କାଳୀନ ସମାଜର ଲୋକେ ହିନ୍ଦୁ ଧର୍ମ ଛାଡ଼ି ଖ୍ରୀଷ୍ଟିଆନ୍ ଧର୍ମରେ ଦୀକ୍ଷିତ ହୋଇ ଯିବାର କୁପରିଣାମ ଦର୍ଶାଇବା ସଂଗେ ସଂଗେ ଧର୍ମ ଓ ଆଧ୍ୟାତ୍ମିକ ପ୍ରବଞ୍ଚନାର କୁପରିଣତି

ଦର୍ଶାଇ ଦିଆଯାଇଛି । ସମାଜ ସଂସ୍କାର କ୍ଷେତ୍ରରେ ନାରୀ ଶିକ୍ଷା, ନାରୀ ସ୍ୱାଧୀନତା, ବାଲ୍ୟ ବିବାହ, ସତୀଦାହ ପ୍ରଥା, ଛୁଆଁ ଅଛୁଆଁ ଭେଦଭାବ ପରି ପ୍ରତ୍ୟକ୍ଷ ଓ ପରୋକ୍ଷ କୁସଂସ୍କାର ଏବଂ ତତ୍‌ଜନିତ ସମସ୍ୟାର ସ୍ୱରୂପ ଉଦଘାଟନ କରାଯାଇଛି । ସବୁଠାରୁ ନିଷ୍ଠୁର ସତ୍ୟ କଥାଟି ହେଉଛି ଯେ, ତତ୍‌କାଳୀନ ସମାଜର ଭଣ୍ଡ ବାବାଜୀ ଓ ମଠର ମଠାଧୀଶଗଣ ଆଧ୍ୟାତ୍ମିକତାର ମୁଖା ପିନ୍ଧି କିପରି ଅନ୍ୟର ଧନ, ଜୀବନ, ଯୌବନ ଓ ସତୀତ୍ୱକୁ ଲୁଣ୍ଠନ କରିଛନ୍ତି ତା'ର ଚିତ୍ର ରହିଛି । ମୋଟାମୋଟି ଭାବରେ ଉକ୍ତ ସମୟର ଉପନ୍ୟାସ ଗୁଡ଼ିକ ଫକୀର ମୋହନୀୟ ଚେତନା ଠାରୁ ଅଲଗା ନୁହଁନ୍ତି ।

ଏଇ ପରିପ୍ରେକ୍ଷୀରେ ଚିନ୍ତାମଣି ମହାନ୍ତିଙ୍କର 'ଟଙ୍କାଗଛ' (୧୯୨୦)ଏକ ଉତ୍‌କୃଷ୍ଟ ଉଦାହରଣ । ଉପନ୍ୟାସଟିରେ ଫକୀର ମୋହନଙ୍କ 'ଧୂଳିଆ ବାବା' ଗଳ୍ପର ପ୍ରତ୍ୟକ୍ଷ ପ୍ରଭାବ ସହଜରେ ଅନୁମାନ କରିହୁଏ । ମଠର ମହନ୍ତମାନେ ସାଧାରଣତଃ ଆଧ୍ୟାତ୍ମିକ ମାର୍ଗରେ ପରିଚାଳିତ ଓ ସମାଜର ପଥ ପ୍ରଦର୍ଶକ ଅଟନ୍ତି । କିନ୍ତୁ ଆଧ୍ୟାତ୍ମିକତା ଓ ଧର୍ମର ଖୋଳପା ଭିତରେ ଲୁଚି ରହିଥିବା ଅର୍ଥ ଲାଳସା ପ୍ରକଟିତ ହେଲେ ସମାଜ ତଥା ବ୍ୟକ୍ତି ଜୀବନରେ ଯେ ଅଶେଷ କ୍ଷତି ସାଧନ କରିଥାଏ ତା'ର ଉଦାହରଣ ଉପନ୍ୟାସଟିରେ ସିଦ୍ଧବାବା ଚରିତ୍ର । ଟଙ୍କା ଗଛର ଲୋଭ ଦେଖାଇ ମଧୁ ନାମକ ଜନୈକ ଯୁବକକୁ ଆସାମ ଚା' ବଗିଚାରେ ବିକ୍ରି କରିଦେବା ପ୍ରସଙ୍ଗରୁ ଜୀବନ ଭିତରେ ଲୁଚିଥିବା ଶଠତା ପଦାରେ ପଡ଼ିଯାଇଛି । ସେହିପରି ତାଙ୍କର 'ଯୁଗଳ ମଠ' (୧୯୨୦) ଉପନ୍ୟାସରେ ଭାରତୀୟ ଧର୍ମ ବିଶ୍ୱାସ ଓ ଆଧ୍ୟାତ୍ମିକ ଭାବନା ଉପରେ ଗଭୀର ଆଲୋକପାତ କରାଯାଇଛି । ଗୋପାଳପୁର ମଠର ପ୍ରତିଷ୍ଠାତା ମହନ୍ତ ରାମାନୁଜ ଦାସ ଥିଲେ ଏକ ଧର୍ମପ୍ରାଣ ଚରିତ୍ର । ତାଙ୍କ ଦ୍ୱାରା ସମାଜର ଅଶେଷ କଲ୍ୟାଣ ସାଧିତ ହେଉଥିଲା । ମାତ୍ର ତାଙ୍କର ଦେହାନ୍ତ ପରେ ଉକ୍ତ ମଠରେ ଯେଉଁ ନୂତନ ମହନ୍ତ ପ୍ରତିଷ୍ଠିତ ହୋଇଛନ୍ତି, ସେ ଜଣେ ଭଣ୍ଡ ଓ ପ୍ରତାରକ । ନିଜର ଯୌନ ଲାଳସା ଚରିତାର୍ଥ ପାଇଁ ସେ ମଠର ସମସ୍ତ ସଂପତ୍ତି ବିକ୍ରି କରି ଦେଇଛନ୍ତି ଓ ଶେଷରେ ମଠରୁ ବିତାଡ଼ିତ ହୋଇଛନ୍ତି । ତାଙ୍କର ଆଉ ଏକ ଉପନ୍ୟାସ 'ଶନିସପ୍ତା' ଉପନ୍ୟାସଟିରେ ମଧ୍ୟ ଏହି ଭାବନାକୁ ପ୍ରଭାବଶାଳୀ କରିବା ପାଇଁ ଉଦ୍ୟମ ହୋଇଛି । ଅନ୍ୟ ଦୁଇଟି ଉପନ୍ୟାସ ଠାରୁ ଏହା ଏକ ଭିନ୍ନ ଧରଣର ଉପନ୍ୟାସ । ଆଧ୍ୟାତ୍ମିକତା ପ୍ରତି ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ଆରୋପିତ । ଅଧିକନ୍ତୁ ଏକ ଅନ୍ଧବିଶ୍ୱାସ ଉପରେ ପର୍ଯ୍ୟବେସିତ । ଶନିବାର, ଶନିବେଳାରେ ଜନ୍ମ ହୋଇ ସନାତନ ପିତାମାତାଙ୍କର ଗଳଗ୍ରହ ହୋଇନାହିଁ । ପରନ୍ତୁ ଆଜନ୍ମ ବ୍ରହ୍ମଚାରୀ ରହି ରାଧାକୃଷ୍ଣ ସେବା ସଦନ, ଜରିଆରେ ଜନହିତକର କାର୍ଯ୍ୟରେ ଲିପ୍ତ ରହିଛି ଏବଂ ଶେଷରେ ପୁରୀର ଏକ

ମଠରେ ମହନ୍ତ ହୋଇ ଦିବ୍ୟ ଜୀବନର ସଂଧାନ ଦେଇଛି । ସାଂସାରିକ ଜୀବନ ଓ ବୈରାଗ୍ୟ ଜୀବନର ଏକ ତୁଳନାତ୍ମକ ବର୍ଣ୍ଣନା ମାଧ୍ୟମରେ ଆଧ୍ୟାତ୍ମିକ ଜୀବନର ପ୍ରତିଷ୍ଠା ଆଣିବାକୁ ଲେଖକ ଉଦ୍ୟମ କରିଛନ୍ତି ।

ନନ୍ଦକିଶୋର ବଳଙ୍କର 'କନକଲତା' (୧୯୨୫) ଉପନ୍ୟାସଟି ମୁଖ୍ୟତଃ ବାଲ୍ୟ ବିବାହ, ବିଧବାବିବାହ ଓ ଯୌତୁକପ୍ରଥା ପରି କେତୋଟି ଘୃଣ୍ୟ କୁସଂସ୍କାର ଉପରେ ପର୍ଯ୍ୟବେସିତ ହୋଇଥିଲେ ହେଁ ସୂଚିନିଷ୍ଠ ଆଚାର ଓ ନୈତିକତାପୂର୍ଣ୍ଣ ମହତ୍ତର ଜୀବନ ପ୍ରତି ଏକ ସ୍ପଷ୍ଟ ଉଦ୍‌ଘୋଷଣା ରହିଛି । ଧନଞ୍ଜୟଙ୍କ ବିଧବା ଭଉଣୀ 'ଉମା'କୁ ବିବାହ କରିବା ପାଇଁ ରାଜେନ୍ଦ୍ର ଇଚ୍ଛା ପ୍ରକାଶ କରିଛି । ମାତ୍ର ତାର ଇଚ୍ଛା ପୂରଣ ହେବା ପୂର୍ବରୁ 'ଉମା' ବିସୂଚିକା ରୋଗରେ ପ୍ରାଣ ହରାଇଛି । ଏ ସଂବାଦ ପ୍ରାପ୍ତିରେ ରାଜେନ୍ଦ୍ର ମର୍ମାହତ ହୋଇଛି ଏବଂ ସନାତନ ଧର୍ମ ଗ୍ରହଣ କରି ଗୃହତ୍ୟାଗ କରିଛି । ଉପନ୍ୟାସଟିରେ ଏହି ପରିଣତି ନନ୍ଦକିଶୋରଙ୍କର ଆଧ୍ୟାତ୍ମିକ ଭାବନାର ସ୍ପଷ୍ଟ ସଂକେତ ବୋଲି ବୁଝିବାକୁ ହେବ ।

ଔପନ୍ୟାସିକ ରାମଚନ୍ଦ୍ର ଆଚାର୍ଯ୍ୟଙ୍କର 'ବୀର ଓଡ଼ିଆ' (୧୯୨୫) ଏକ ଐତିହାସିକ ଉପନ୍ୟାସ ହେଲେ ହେଁ, ଏଥିରେ ଆଧ୍ୟାତ୍ମିକତା ଓ ଧର୍ମୀୟ ଭାବନା ବେଶ୍ ଉପଲବ୍ଧ । ଓଡ଼ିଆ ଜାତିର ପ୍ରାଣକେନ୍ଦ୍ର ଓ ଆଧ୍ୟାତ୍ମିକସ୍ଥଳୀ ପୁରୀ ଜଗନ୍ନାଥ ମନ୍ଦିର ବିଧର୍ମୀ ତକିଖାଁଙ୍କ ଆକ୍ରମଣ ଓ ଲୁଣ୍ଠନର ଶିକାର ହୋଇନାହିଁ ବରଂ ଓଡ଼ିଆ ଜାତିର ଆଧ୍ୟାତ୍ମିକ ଓ ଧାର୍ମିକ ଭାବନା ଲୁଣ୍ଠିତ ହୋଇ ଯାଇଛି । ସେହିପରି ତାଙ୍କର ପୀୟୁଷ ପ୍ରବାହ (୧୯୩୫) ରେ ଆଧ୍ୟାତ୍ମିକ ଭାବନା ପରିଲକ୍ଷିତ ହୋଇଥାଏ ।

ଔପନ୍ୟାସିକା ଗୋଦାବରୀଶ ମିଶ୍ରଙ୍କର ଚାରିଖଣ୍ଡ ଉପନ୍ୟାସ ମଧ୍ୟରୁ 'ଅଭାଗିନୀ' (୧୯୨୨) ଉପନ୍ୟାସଟିରେ ଆଧ୍ୟାତ୍ମିକ ଭାବନାକୁ ବେଶ୍ ପ୍ରାଞ୍ଜଳ ଭାବରେ ଉପସ୍ଥାପନ କରାଯାଇଛି । ଏହି ଉପନ୍ୟାସଟି ଆଧ୍ୟାତ୍ମିକ ଚେତନାର ଏକ ସଫଳ ଉଦ୍ୟମ ବୋଲି ଗ୍ରହଣ କରିବାକୁ ହେବ । ଏଥିରେ ଆଧ୍ୟାତ୍ମିକ ଭାବନା ଓ ଧର୍ମ ଚେତନା ଏତେ ସ୍ପଷ୍ଟ ଯେ, ମନେହୁଏ ଲେଖକଙ୍କର ଆଧ୍ୟାତ୍ମିକ ଚେତନାଟି ଏକ ଆନ୍ତରିକ ଅଭିବ୍ୟକ୍ତି ଲାଭ କରିଛି । ଉପନ୍ୟାସର ନାୟକ 'ପାଣୁ ନାୟକ'ଏକ ସାମାଜିକ ଚରିତ୍ର ହୋଇଥିଲେ ହେଁ ପରବର୍ତ୍ତୀ ପର୍ଯ୍ୟାରେ ମହତ୍ତ୍ୱପୂର୍ଣ୍ଣ ଆଧ୍ୟାତ୍ମିକ ଚେତନାର ଅଧିକାରୀ ହୋଇ ସମାଜର ଅଶେଷ କଲ୍ୟାଣ ସାଧନ କରି ପାରିଛି । ଉପନ୍ୟାସଟି ଏକ ସମୟୋପଯୋଗୀ ଉପନ୍ୟାସ ଭାବେ ଗ୍ରହଣୀୟ ହୋଇପାରିବ । ଅସଜଡ଼ା ଦୁନିଆ ଓ ଅଶାନ୍ତ ପୃଥିବୀକୁ ସଜାଡ଼ିବାକୁ ହେଲେ, ଆଧ୍ୟାତ୍ମିକ ମାର୍ଗ ଏକମାତ୍ର ପନ୍ଥା ବୋଲି ଏଥିରୁ ସ୍ପଷ୍ଟ ସୂଚିତ ହୁଏ । ପ୍ରଥମରୁ ପାଣୁ ନାୟକ ଏକ

ବିପଥଗାମୀ, ନରହନ୍ତା, ତସ୍କର, ଦାଗୀ ଓ ବ୍ରହ୍ମରାକ୍ଷସ ଭାବରେ ଚିତ୍ରିତ । ଘଟଣା କ୍ରମରେ ସେ ଏକ ବୈଷ୍ଣବ ମଠରେ ଗୋଟିଏ ରାତ୍ରି ଆଶ୍ରୟ ନେଇଛି । କିନ୍ତୁ ନିଜର ହୀନ ପ୍ରବୃତ୍ତି ଯୋଗୁଁ ମଠରୁ ଏକ ରୌପ୍ୟନିର୍ମିତ ଦୀପରଖା ଚୋରି କରି ପୋଲିସ ଦ୍ୱାରା ଧରା ପଡ଼ିଛି । ପୋଲିସ ତାକୁ ପରଦିନ ମଠର ମହନ୍ତଙ୍କ ନିକଟକୁ ଆଣିଛି । ହେଲେ ବୈଷ୍ଣବ ବାବାଜୀ ପୋଲିସ୍ ହାତରୁ ଉଦ୍ଧାର କରି ତାକୁ ଉପଦେଶ ଛଳରେ କହିଛି - 'ତୁମେ ଏଣିକି ଜଣେ ସାଧୁ ଲୋକ ହେବ ।' ଏହାପରେ ପାଣୁ ନାୟକ ଜୀବନରେ ଆସିଛି ପରିବର୍ତ୍ତନ । ନିଜକୁ ଜଣେ ସାଧୁ ଲୋକରେ ପରିଣତ କରିବା ପାଇଁ କଠୋର ପ୍ରତିଜ୍ଞା କରିଛି । ଭଲ ଲୋକଟିଏ ହେବା ପାଇଁ କମ୍ ସାଧନା ସେ କରିନାହିଁ । ପରିଣତିରେ ସେ ହୋଇଛି ସାରଙ୍ଗଗଡ଼ର ଦେୱାନ । ଦାନ, ଧର୍ମ ଓ ସେବା ମାଧ୍ୟମରେ ଲୋକମାନଙ୍କ ନିକଟରେ ଜଣେ ବିଖ୍ୟାତ ମହାତ୍ମାରେ ପରିଣତ ହୋଇଛି ।

୧୯୩୦ ମସିହା ପରେ ଓ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଯେଉଁ ପ୍ରଥିତଯଶା ଔପନ୍ୟାସିକଗଣ ଆବିର୍ଭୂତ ହୁଅନ୍ତି, ସେମାନଙ୍କ ମଧ୍ୟରୁ କାଳିନ୍ଦୀ ଚରଣ ପାଣିଗ୍ରାହୀ ଅନ୍ୟତମ । ତାଙ୍କର ଅମରକୃତି ମାଟିର ମଣିଷ ( ୧୯୩୧ ) ଉପନ୍ୟାସରେ ବରଜୁ ସତ୍ୟ,ଧର୍ମ, ନ୍ୟାୟ, ତ୍ୟାଗ ଓ ଆଦର୍ଶର ପ୍ରତିଷ୍ଠା ଆଣିଛି । ଭାରତୀୟ ଚିନ୍ତାମାନସର ସେ ଏକ ସଫଳ ଅନୁକୃତି ହେଲେ ହେଁ ବରଜୁର ଏହି ଚାରିତ୍ରିକ ମହତ୍ୱ 'ଲୁହାର ମଣିଷ'(୧୯୪୭) ଉପନ୍ୟାସରେ ପରିଦୃଷ୍ଟ ହୁଏ ନାହିଁ । କିନ୍ତୁ ଏ ପ୍ରସଙ୍ଗରେ 'ମୁକ୍ତାଗଡ଼ର କ୍ଷୁଧା' ( ୧୯୩୩) ଓ ଅମରଚିତା ( ୧୯୩୩)ପରି ଉପନ୍ୟାସରେ ବେଶ୍ ଫଳପ୍ରସୂ ହୋଇ ପାରିଛି । 'ମୁକ୍ତାଗଡ଼ରେ କ୍ଷୁଧା' ରେ ଶୁଭକାନ୍ତ ଚରିତ୍ର ଔପନ୍ୟାସିକ କାଳିନ୍ଦୀ ଚରଣଙ୍କର ଅନ୍ୟ ଏକ ଅପୂର୍ବ ସୃଷ୍ଟି । ଏନି ଚରିତ୍ରିଟିର ଗୌରବମୟ ଜୀବନର ପରିଣତିକୁ ପାଠକ ଆବିଷ୍କାର କରେ 'ଅମରଚିତା' ଉପନ୍ୟାସରେ । ମାଟିର ମଣିଷର ବରଜୁ ଚରିତ୍ରରେ ଯେଉଁ ଅସ୍ୱାଭାବିକତା ପାଠକ ଲକ୍ଷ୍ୟ କରେ , ଶୁଭକାନ୍ତ ଚରିତ୍ର ନିକଟରେ ତାହା ହୁଏ ନାହିଁ । ତେଣୁ ଶୁଭକାନ୍ତ ଚରିତ୍ରଟି କାଳିନ୍ଦୀ ଗଦ୍ୟମାନସରେ ଏକ ଅମର କୃତି । ଏହି ଚରିତ୍ର ପାଖରେ ବେଶ୍ ଆଧ୍ୟାତ୍ମିକତାର ସ୍ପର୍ଶ ଉପଲବ୍ଧ ହୁଏ । ଅବଶ୍ୟ ମାଟିର ମଣିଷରେ ଭାଷାରେ ଯେଉଁ କାବ୍ୟିକତା ଓ ପ୍ରକାଶଭଙ୍ଗୀରେ ସ୍ୱଚ୍ଛଳତା ପରିଦୃଷ୍ଟ ହୁଏ, ମୁକ୍ତାଗଡ଼ର କ୍ଷୁଧା ଓ ଅମର ଚିତାରେ ସେପରି କାବ୍ୟିକ ଗଢ଼ଣ ପରିଦୃଷ୍ଟ ହୁଏନା ।

ସ୍ୱାଧୀନତା ପୂର୍ବରୁ ଡ଼ଃ ହରେକୃଷ୍ଣ ମହତାବ ପ୍ରତିଭା (୧୯୪୨) ଅବ୍ୟାପାର (୧୯୪୭) , ଟାଉଟର (୧୯୩୫) ଓ ନୂତନ ଧର୍ମ (୧୯୩୫) ପରି କେତୋଟି

ମହତ୍ତ୍ୱପୂର୍ଣ୍ଣ ଉପନ୍ୟାସ ରଚନା କରିଥିଲେ ହେଁ. କେବଳ ନୂତନ ଧର୍ମରେ ଆଧ୍ୟାତ୍ମିକ ଚେତନାର ଚିତ୍ର ପ୍ରତିଫଳିତ । ଅନ୍ୟ ସବୁଯାକ ଉପନ୍ୟାସ ସମାଜ ସଂସ୍କାର ନିମନ୍ତେ ଉଦ୍ଦିଷ୍ଟ । ବାଲେଶ୍ୱର ଜିଲ୍ଲା ଜଗଦୀଶପୁର ର ହରିହର ନାମକ ଜନୈକ ସଂଭ୍ରାନ୍ତଶୀଳ ବ୍ୟକ୍ତି ଧର୍ମାତ୍ମା ବୋଲି ପରିଚିତ । ନିଜର ତଥା ଗ୍ରାମର ଲୋକମାନଙ୍କର ଆଧ୍ୟାତ୍ମିକ ପିପାସା ମେଣ୍ଟାଇବା ପାଇଁ ସେ ନଦିୟାରୁ ବୈଷ୍ଣବ ମାନଙ୍କୁ ନିମନ୍ତ୍ରଣ କରି ଆଣି ଗ୍ରାମରେ ସଂକୀର୍ତ୍ତନ କରିବା ଏବଂ ସେଥିପାଇଁ ସମସ୍ତେ ଚାନ୍ଦା ଦେବା ଘଟଣାରୁ ସରଳ ଓ ଧର୍ମପ୍ରାଣ ଗ୍ରାମବାସୀଙ୍କର ଆଧ୍ୟାତ୍ମିକ ମାନସିକତାର ପରିଚୟ ମିଳେ । ହେଲେ ହେଁ ଏହି ଭାବନାକୁ ଗ୍ରାମ୍ୟ ଜୀବନରେ ପ୍ରତିଷ୍ଠା କରିବା ଲେଖକଙ୍କର ଉଦ୍ଦେଶ୍ୟ ନୁହେଁ । ଆଧ୍ୟାତ୍ମିକତାର ଆବରଣ ତଳେ ଲୁଚି ରହିଥିବା ଯୌନ ଲାଳସାର ସ୍ୱରୂପକୁ ଉଦ୍‌ଘାଟନ କରିବା ସହିତ ସମାଜ ସେବା ଓ ସମାଜ ସଂସ୍କାର କରିବା ଲେଖକଙ୍କର ମୁଖ୍ୟ ଉଦ୍ଦେଶ୍ୟ ହୋଇ ପଡ଼ିଛି ।

ଆଲୋଚ୍ୟ ସମୟରେ ଔପନ୍ୟାସିକ ରାମ ପ୍ରସାଦ ସିଂହ ଏକ ପ୍ରଗତିଶୀଳ ଔପନ୍ୟାସିକ ହୋଇଥିବାରୁ ତାଙ୍କ ଉପନ୍ୟାସରେ ଈଶ୍ୱର, ଧର୍ମ ଓ ଆଧ୍ୟାତ୍ମିକତାର ବର୍ଣ୍ଣନା ଦେଖିବାକୁ ମିଳେ ନାହିଁ । ତେବେ ତାଙ୍କର ଆଧ୍ୟାତ୍ମିକ ଅନ୍ୟ ଏକ ରୂପରେ ରୂପାନ୍ତରିତ । ପ୍ରଚଣ୍ଡ ଦେଶଭକ୍ତି, ସମାଜସେବା ଓ ତ୍ୟାଗ ମୂଳରେ ଯେ ପ୍ରଚ୍ଛନ୍ନ ଆଧ୍ୟାତ୍ମିକତା ଲୁଚି ରହିଛି ତାହାହିଁ ତାଙ୍କ ଉପନ୍ୟାସ ଗୁଡ଼ିକରୁ ପ୍ରତିପନ୍ନ ହୁଏ । ତାଙ୍କର ମରୀଚିକା (୧୯୪୬), ପୂଜାରବଳୀ (୧୯୩୧) ପୂର୍ବରାଗ (୧୯୫୫) ଓ ସଂଧ୍ୟାଦୀପ (୧୯୬୬) ଉପନ୍ୟାସରେ ସେ ଯେଉଁ ଆଦର୍ଶର ଚରିତ୍ର ଗୁଡ଼ିକୁ ସୃଷ୍ଟି କରିଛନ୍ତି, ସେମାନେ ସମସ୍ତେ ଶୁଦ୍ଧପୂତ ଭାବେ ଦେଶଭକ୍ତ । ମରୀଚିକାର ପ୍ରଦୋଷ, ପୂଜାର ବଳୀରେ ଅନନ୍ତ, ପୂର୍ବରାଗର ଅରୁଣ, ସନ୍ଧ୍ୟାଦୀପର ପୂର୍ଣ୍ଣାନନ୍ଦ ଓ ଶିଷ୍ୟ ସଚ୍ଚିଦାନନ୍ଦ ଜଣେ ଜଣେ ଦେଶଭକ୍ତ ଏବଂ ସମାଜ ପାଇଁ ସମର୍ପିତ । କେବଳ ପୂର୍ବରାଗ ଉପନ୍ୟାସରେ ଅରୁଣ ଓ ମିଃ ଚାଟାର୍ଜୀ ଈଶ୍ୱର ବିଶ୍ୱାସ ସଂପର୍କିତ ଆଲୋଚନା ପରିପ୍ରେକ୍ଷୀରେ ଆଦର୍ଶବାଦକୁ ଗ୍ରହଣ କରିନେଇଛନ୍ତି ।

ନିତ୍ୟାନନ୍ଦ ମହାପାତ୍ରଙ୍କର 'ଜୀବନର ଲକ୍ଷ୍ୟ' (୧୯୪୬) ଉପନ୍ୟାସରେ ସଂସାର ବିରାଗୀ ଆଧ୍ୟାତ୍ମିକ ଚେତନାର ଚିତ୍ର ଦେଖିବାକୁ ମିଳେ । ଅନିମେଷା ସହିତ ପ୍ରେମ ପ୍ରଣୟରେ ଲିପ୍ତ ରହି ମଧ୍ୟ କନକାଦିତ୍ୟ ଭାବ ପ୍ରବଣତାରେ ବଶ ହୋଇ ସଂସାର ବାନ୍ଧିବା ପରିବର୍ତ୍ତେ ସଂସାର ତ୍ୟାଗ କରିଛି । ସଂସାର ସଂପର୍କରେ ତାର ଏକ ପ୍ରକାର ବୈରାଗ୍ୟ ଭାବ ଜାତ ହୋଇଛି । ସୁଖର ସନ୍ଧାନରେ ଦେଶ ଦେଶେ ବୁଲିଛି । ହେଲେ କେଉଁଠି ତାକୁ ସୁଖ ମିଳିନାହିଁ । ଶେଷରେ ସେ ଉପଲବ୍ଧି

କରିଛନ୍ତି - ମଣିଷ ଭିତରୁ ସବୁ ପ୍ରକାର କାମନାର ବିନାଶ ହେଲେ ଯାଇ ଯଥାର୍ଥ ସୁଖ ମିଳେ । ଇଚ୍ଛାର ସ୍ୱାତନ୍ତ୍ର୍ୟ ହରାଇ ପାରିଲେ ଜୀବନ ଆନନ୍ଦମୟ ହୋଇ ଉଠେ । ଭିତରେ କାମନା ପାରିଲେ ଭଗବତ୍ ପ୍ରାପ୍ତିରେ ମଧ୍ୟ ସୁଖ ମିଳେନା । ତ୍ୟାଗ, ସଂଯମ, ସହିଷ୍ଣୁତା, ଉଦାରତା ଓ ଅହିଂସାର ପ୍ରତିମୂର୍ତ୍ତି ଭାବେ ଲେଖକ କନକାଦିତ୍ୟର ଯେଉଁ ଜୀବନାଲେଖ୍ୟ ବର୍ଣ୍ଣନା କରିଛନ୍ତି ତାହା ଏତେ ତତ୍ତ୍ୱ ସମ୍ବଳିତ ହୋଇ ପଡ଼ିଛି ଯେ, ଉପନ୍ୟାସର କଳାତ୍ମକ ଦିଗଟି ବ୍ୟାହତ ହୋଇଛି ବୋଲି ମନେହୁଏ ।

୧୯୪୭ ମସିହା ଅର୍ଥାତ ସ୍ୱାଧୀନତା ପୂର୍ବରୁ ପର୍ଯ୍ୟାପ୍ତ ଉପନ୍ୟାସ ରଚନା କରି ପ୍ରତିଷ୍ଠା ଅର୍ଜନ କରିଥିବା ଔପନ୍ୟାସିକ କାହ୍ନୁଚରଣ ମହାନ୍ତିଙ୍କ ଉପନ୍ୟାସରେ ଯଥେଷ୍ଟ ଆଧ୍ୟାତ୍ମିକତାର ସ୍ପର୍ଶ ମିଳେ । ସର୍ବରୀ (୧୯୫୨) ଉପନ୍ୟାସରେ ସନାତନ ଚରିତ୍ର ମାଧ୍ୟମରେ ଅସୀମ ଶୂନ୍ୟତା ଭିତରେ ଏକ ସରଳ ଜୀବନର ବିସ୍ମୃତିକୁ ଉପଲବ୍ଧି କରିଥିଲା ବେଳେ 'ତଥାସ୍ତୁ' (୧୯୬୩)ରେ ଉଭୟ ଆଧ୍ୟାତ୍ମିକ ଓ ଆଦର୍ଶବାଦୀ ଜୀବନର ପରିଚୟ ମିଳେ । ଉପନ୍ୟାସର ନାୟକ ନବୀନ ଜନୈକ ଆଧ୍ୟାତ୍ମମାର୍ଗୀ ବୈରାଗୀର ସଂସ୍ପର୍ଶରେ ଆସି ଗୃହ ତ୍ୟାଗୀ ହେବାକୁ ସ୍ଥିର କରିଛି । ଏଥିରେ ପିତା ରଘୁନାଥ ମର୍ମାହତ ହୋଇ ନବୀନକୁ ଆଶା ନାମ୍ନୀ ଏକ ସୁନ୍ଦରୀ କନ୍ୟା ସହିତ ବିବାହ କରାଇ ଦେଇଛନ୍ତି । ହେଲେ ସାବତ ଶାଶୁର ଚକ୍ରାନ୍ତରେ ଆଶା ସ୍ୱାମୀ ପାଖରେ ରହି ପାରି ନାହିଁ । ବାପ ଘରକୁ ଚାଲିଯାଇଛି । ଏଥିରେ ନବୀନ ମର୍ମାହତ ହୋଇ ସନ୍ୟାସୀ ଜୀବନକୁ ବରଣ କରିନେଇଛି ଏବଂ କନ୍ଧମାଳ ଅଂଚଳରେ ଥିବା ଏକ ଆଶ୍ରମରେ ଜୀବନ ଅତିବାହିତ କରିଛି । ସମୟକ୍ରମେ ଆଶା ମଧ୍ୟ ସେଠାରେ ପହଞ୍ଚି ନବୀନ ସହିତ ସନ୍ୟାସିନୀ ଜୀବନ ଅତିବାହିତ କରିଛି । ପାର୍ଥିବ ଜଗତକୁ ଛାଡ଼ି ଦୁହେଁ ଅସୀମର ସନ୍ଧାନରେ ବ୍ରତୀ ହୋଇଛନ୍ତି ।

ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଅପୂର୍ବ କଳାକୁଶଳତାର ଅଧିକାରୀ ତଥା ପ୍ରଖ୍ୟାତ କଥାଶିଳ୍ପୀ ଗୋପୀନାଥ ମହାନ୍ତିଙ୍କର ଦାଦିବୁଢ଼ା (୧୯୩୮) ପରଜା (୧୯୪୬), ଅମୃତର ସନ୍ତାନ (୧୯୪୯), ପାହାନ୍ତା, ଲୟବିଲୟ (୧୯୬୧) ଓ ମାଟି ମଟାଳ (୧୯୭୪) ଉପନ୍ୟାସରେ ଯଥେଷ୍ଟ ଆଧ୍ୟାତ୍ମିକ ଚେତନାର ବର୍ଣ୍ଣନା ରହିଛି । 'ଦାଦିବୁଢ଼ା'ରେ ଆଦିବାସୀ ଜୀବନର ଅନ୍ଧବିଶ୍ୱାସ ଓ କୁସଂସ୍କାରର ଚିତ୍ର ପ୍ରତିଫଳିତ ହୋଇଥିଲେ ହେଁ ଆଧ୍ୟାତ୍ମିକତା ଏବଂ ଈଶ୍ୱରବିଶ୍ୱାସର ଯଥେଷ୍ଟ ପ୍ରଭାବ ନିହିତ ଅଛି । ସରଳ ନିଷ୍କପଟ ଆଦିବାସୀ ମଣିଷ ସଜୀବ ଠାରୁ ନିର୍ଜୀବ ପର୍ଯ୍ୟନ୍ତ ସବୁ ଦେଖେ ପେନୁ ବା ଈଶ୍ୱର ସତ୍ତା । ଏହି ଉପନ୍ୟାସରେ ଥୁଣ୍ଟା ଖଜୁରୀ ଗଛ ହୋଇଛି ଆଦିବାସୀର ରକ୍ଷକ -ଦାଦିବୁଢ଼ା । ଏହାକୁ କେନ୍ଦ୍ର କରି ତା' ଜୀବନର ଜୟଯାତ୍ରା ।

ଏହି ଦାଦିବୁଢ଼ା ହୋଇଛି ସବୁ ସୁଖ ଦୁଃଖର ସାଥୀ ଓ ବିଶ୍ୱାସର ପ୍ରତୀକ । ବିଶ୍ୱାସ ହିଁ ଆଧ୍ୟାତ୍ମିକତତା । ଏହାର ମୁଖ୍ୟ ଚରିତ୍ର ରାମ ନାଇକ । ପୁଅ ଠେଙ୍ଗାଢ଼ାନି ଯେତେବେଳେ ଖ୍ରୀଷ୍ଟାନ୍ ହୋଇ ଆସାମ ପଳେଇଚି, ସେତେବେଳେ ଏକ ନିବିଡ଼ ମୁହୂର୍ତ୍ତରେ ରାମ ନାଇକ ଦାଦିବୁଢ଼ା ପାଖରେ ଛିଡ଼ା ହୋଇ ତା' ମନର ବେଦନାକୁ ପ୍ରକାଶ କରିଛି ଅଭିମାନରେ । କହିଛି- 'ଦାଦିବୁଢ଼ା, ତୋର ମନରେ ଏଇଆ ଥିଲା ଦାଦିବୁଢା- କି ଦୋଷ କରିଥିଲି ମୁଁ ତୋର- ମୋର ସର୍ବନାଶ କଲୁ । ଯଦି କହୁଛୁ ଠେଙ୍ଗାଟି ମୋର ଖରାପ ଡୁମା, ଗୋଟିଏ ଭଲ ଡୁମା ପଠାଇଲୁ ନାହିଁ କାହିଁକି ଦାଦିବୁଢ଼ା ? ପାଳିଲି, ବଢ଼େଇଲି,ଏଡ଼େଟିରୁ ଏଡୁଟିଏ କଲି - ଶେଷରେ ପୁଅକୁ ମୋରି ମୁହଁରେ ଗୋଇଠା ମରେଇ ନେଇ ଦୂର ଦେଶକୁ ବିଦା କରିଦେଲୁରେ ଦାଦି ବୁଢ଼ା - ମୋର ଖାଇବା ଭାତରେ ଧୂଳି (ପୃ.୯୬) । ଆଦିବାସୀ ଜୀବନର ଏଇ ଗଭୀର ଈଶ୍ୱର ବିଶ୍ୱାସ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ଜୀବନର ଏକ ମହାକାବ୍ୟ 'ପରଜା' ଉପନ୍ୟାସ । ଡୁମା, ପେନୁ,ଧରତନୀ ଦେବତା, ବୃକ୍ଷରୋପଣକୁ ଆଦିବାସୀ ପରଜା ଗ୍ରହଣ କରି ନେଇଛି ତାର ସରଳ ଜୀବନରେ । ଗଭୀର ଈଶ୍ୱର ବିଶ୍ୱାସର କଳ କଳ ଝରଣାଟିଏ ବୋହି ଯାଇଛି ସମଗ୍ର ପରଜା ଉପନ୍ୟାସରେ । ସେହିପରି ଅମୃତର ସନ୍ତାନ ଉପନ୍ୟାସର ନାୟକ "ମଣିଆପାୟୁ" ଶାଳଗଛକୁ ଆଉଜି ପୂର୍ବଜନ୍ମ ଓ ପରଜନ୍ମର ସ୍ୱପ୍ନ ଦେଖିଛି । ସେ ପରଜନ୍ମରେ ଭଲଥିଲା, ଏ ଜନ୍ମରେ ଭଲ ଅଛି । ଯା'ପରେ -ଅବଶ୍ୟ ତା'ର ପରଜନ୍ମ ଅନିବାର୍ଯ୍ୟ, ସେ ଖୁସି ହୁଏ ।(ପୃ.୨) 'ପାହାନ୍ତା' ଉପନ୍ୟାସର ମୁଖ୍ୟ ଚରିତ୍ର 'ଅମିନ'ପଂଗୁ ହୋଇ ନିଜକୁ ଅନ୍ୱେଷଣ କରିଛି । ଆତ୍ମ ଜିଜ୍ଞାସା ମଧ୍ୟରେ ଅନୁଭବ କରିଛି ଏକ ଇନ୍ଦ୍ରିୟୋତ୍ତର ଚେତନା । 'ଲୟ ବିଲୟ' ଉପନ୍ୟାସରେ ତରୁଣ ରାୟ ପୁରୀ ଜଗନ୍ନାଥ ଦର୍ଶନକୁ ଆସି ପାଇଛି ଏକ ଦିବ୍ୟ ଜୀବନ ଯେଉଁ ଜୀବନ ଯାବତୀୟ ସଂକୀର୍ଣ୍ଣତା ମଧ୍ୟରୁ ବହୁ ଉର୍ଦ୍ଧ୍ୱରେ । ସେଠି କିଛି ଅପୂର୍ଣ୍ଣତା ନାହିଁ ।

ଔପନ୍ୟାସିକଙ୍କର ମାଟିର କୋଣାର୍କ ମାଟିମଟାଳ (୧୯୭୪) ଆଧ୍ୟାତ୍ମିକ ଭାବନାର ଏକ ଅପୂର୍ବ କଳାକୃତି । ଦାଦିବୁଢ଼ା,ଅମୃତର ସନ୍ତାନ ଆଦି ଉପନ୍ୟାସରେ ଯେଉଁ ଆଧ୍ୟାତ୍ମିକ ଚେତନା ଓ ଭାଗବତ ଭାବନାର ଉଦ୍ରେକ ହୋଇଥିଲା, ତାହାର ଏକ ସଫଳ ରୂପାୟନ ଘଟିଛି ଏହି ମାଟିମଟାଳରେ । ସମଗ୍ର ଉପନ୍ୟାସଟିରେ ଭାରତୀୟ ତ୍ୟାଗପୂତ ଜୀବନର ଧାରା ଅନୁସୃତ ହୋଇଛି ବୋଲି ମନେହୁଏ । ପୃଥିବୀରେ ମଣିଷ ଜନ୍ମ ହୋଇଛି କେବଳ ନିଜ ପାଇଁ ନୁହେଁ କି 'ମୁଁ'ତ୍ୱ ର ବଢ଼େଇ ପାଇଁ ନୁହେଁ, ସେ ସୃଷ୍ଟି ହୋଇଛି ଅନ୍ୟପାଇଁ ଓ ଅନ୍ୟର ଉପକାର ପାଇଁ । ଏପରିକି ନିଜ ଜୀବନ ଦେବା ପାଇଁ ପଛେଇଯାଏ ନାହିଁ ସେ (ମହି) । ସେଇଠି ତା'ର ଏକ ସ୍ନିଗ୍ଧ

ଅନୁଭବ ଆସେ, ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ । ତାରି ଭିତରେ ତ'ାର ଐଶ୍ୱରିକ ଐଶ୍ୱର୍ଯ୍ୟ ଓ ଆଧ୍ୟାତ୍ମିକତାର ନିର୍ବାକ ଉପଲବ୍ଧି ହୁଏ । ଏଇ ମୁଗ୍‌ଧ ଅନୁଭବ ଆଉ ଏକ ପ୍ରତିମୂର୍ତ୍ତି ସିନ୍ଧୁ ଚୌଧୁରୀ । ପୁଣି ଆଭିଜାତ୍ୟର ମୁଖା ଫିଙ୍ଗି ଦେଇ ଉପନ୍ୟାସର ନାୟକ ରବି ଜନସେବାରେ ନିଜକୁ ହଜେଇ ଦେଇ ପାରିଛି ପରମ ସନ୍ତୋଷ । ନାୟିକା ଛବି ଜାତିଆଣ ଭେଦାଭାବ ଭୁଲି ଅଚ୍ଛବ ମଣିଷମାନଙ୍କର ସେବା କରିଛି ଘର ଘର ବୁଲି । ସିନ୍ଧୁ ଚୌଧୁରୀ ତନ୍ମୟ ଚିତ୍ତରେ ଅନୁଭବ କରିଛନ୍ତି - 'ପରୋପକାରାୟ ସ୍ୱର୍ଗାୟ' କଳ୍ପିତ ସ୍ୱର୍ଗ ଓହ୍ଲେଇ ଆସିଛି ମାଟିକୁ, ଏଇ ଧୂଳି ଧୂସରିତ କଳୁଷ ଧରଣୀକୁ । ସବୁ ଭେଦାଭାବ ଭୁଲି ଦୁଇ ଗାଁ ଏକ ହୋଇଛି । ଛବି ବି ନିଜ ଭିତରେ ଉବଲବ୍ଧି କରିଛି - ' ସେ ବୋତଲରେ ବନ୍ଦୀ ଏସେନ୍‌ସ ନୁହେଁ, ସେ ଫୁଲରର ସୌରଭ । ଆପଣାକୁ ସାଇତି ରଖିବାକୁ ଖୋଜି ନାହିଁ, ଦୁନିଆଁର ସେବା କରିବ, ଆନନ୍ଦ ହେବ, ସେହି ତାର ଆନନ୍ଦର ସ୍ୱପ୍ନ ।' (ପୃ.୮୩୦)

ସ୍ୱାଧୀନତା ପରବର୍ତ୍ତୀ ସମୟରେ ପ୍ରଖ୍ୟାତ କଥାଶିଳ୍ପୀ ସୁରେନ୍ଦ୍ର ମହାନ୍ତିଙ୍କର ଅନ୍ଧଦିଗନ୍ତ (୧୯୬୪), ନୀଳଶୈଳ ଓ ନୀଳାଦ୍ରୀ ବିଜୟ (୧୯୮୦) ଉପନ୍ୟାସରେ ମାନବବାଦ, ଗଭୀର ଈଶ୍ୱର ପ୍ରୀତି ଓ ଆଧ୍ୟାତ୍ମିକ ଚେତନାର ଏକ ବଳିଷ୍ଠ ଓ ସମୃଦ୍ଧି ଦିଗଟି ଆବିଷ୍କୃତ ହୋଇଛି । ଅନ୍ଧ ଦିଗନ୍ତରେ Self Expolation ବା ଆତ୍ମ ନିରୀକ୍ଷଣ ଭିତରେ ଶୁଦ୍ଧଭାବନା,ନୈତିକତା, ଆଧାତ୍ମିକତା, ସାମାଜିକତା ଏବଂ ଜାତିୟତାର ପ୍ରଚଣ୍ଡ ଉତାପ ପରିଲକ୍ଷିତ ହୋଇଥିଲା ବେଳେ 'ନୀଳଶୈଳ' ଓ 'ନୀଳାଦ୍ରି ବିଜୟ'ରେ ଜଗନ୍ନାଥ ଧର୍ମ ଓ ସଂସ୍କୃତି ପ୍ରତି ଗଭୀର ରେଖାପାତ କରାଯାଇଛି । ଅନ୍ଧ ଦିଗନ୍ତ ନିଧି ଦାସ ଭିତରେ ନୈତିକ ଓ ଆଧ୍ୟାତ୍ମିକ ଚେତନାର ଉଦ୍‌ବେଳନ ଭିତରେ ସଚ୍ଚା ଜାତୀୟତାର ଯେଉଁ ବହ୍ନି ପ୍ରଜ୍ଜ୍ୱଳିତ ହୋଇଛି, ତାହା ବାସ୍ତବିକ ଅତୁଳନୀୟ । ସେହିପରି ନୀଳଶୈଳ ଓ ନିଳାଦ୍ରୀ ବିଜୟରେ ଓଡ଼ିଶୀ ସଂସ୍କୃତିର କ୍ରମ ବିବର୍ତ୍ତନ ଧାରା ପରିଲକ୍ଷିତ ହୁଏ । ଓଡ଼ିଆ ଧର୍ମ-ଦର୍ଶନ-ସଂସ୍କୃତି ଓ ଆଧ୍ୟାତ୍ମିକତାର କେନ୍ଦ୍ରବିନ୍ଦୁ ନୀଳାଦ୍ରି ବିହାରୀ ଜଗନ୍ନାଥ ଚେତନାରେ ରାଜା ରାମଚନ୍ଦ୍ର ଦେବଙ୍କ ଠାରୁ ଆରମ୍ଭ କରି ସରଦେଇ ପର୍ଯ୍ୟନ୍ତ କେବଳ ଅବଗାହନ କରିନାହାଁନ୍ତି, ପୁରୀ ଠାରୁ ଟିକାବାଲି ପର୍ଯ୍ୟନ୍ତ ଜଗନ୍ନାଥଙ୍କ ସ୍ପର୍ଶରେ ଯେ ପୂତ ପବିତ୍ର ହୋଇ ଉଠିଛି - ଏହା ନିଃସନ୍ଦେହ ।

ଫ୍ରୟେଡ଼ିୟ ତତ୍ତ୍ୱ ଅନୁସାରେ ମନୁଷ୍ୟର ଯୌନାକାଂକ୍ଷା ବାLibido ର ଚରିତାର୍ଥ ହୋଇ ନ ପାରି ଉଭୟ ମାନସିକ ଓ ସ୍ନାୟବିକ ବିକାର ସୃଷ୍ଟି କରେ ଏବଂ ମଣିଷ ମାନସିକ ରୋଗୀରେ ପରିଣତ ହୁଏ । କିନ୍ତୁ କୌଣସି କ୍ଷେତ୍ରରେ ଏହି ମାନସିକ

ବିକାର ମାନସିକ ରୋଗ ସୃଷ୍ଟି ନ କରି ଉତ୍ତରଣମୁଖୀ ହୋଇଗଲେ ମଣିଷ ସଂସାର ତଥା ବୈରାଗ୍ୟ, ଗୈରିକ ସନ୍ୟାସୀ, ଚିତ୍ରକର,କଳାକାର ଓ ଦେଶଭକ୍ତରେ ପରିଣତ ହୋଇ ସମାଜର କଲ୍ୟାଣ ସାଧନ କରେ । ଓଡ଼ିଆ ଉପନ୍ୟାସର ବହୁ ଆଦରଣୀୟ ଔପନ୍ୟାସିକ ବିଭୂତି ପଟ୍ଟନାୟକଙ୍କର 'କେଶବତୀ କନ୍ୟା' ଉକ୍ତ ଫ୍ରୟେନୀୟ ତତ୍ତ୍ୱ ଉପରେ ପର୍ଯ୍ୟବେସିତ ଏକ ମନସ୍ତାତ୍ତ୍ୱିକ ଉପନ୍ୟାସ । ଏଥିରେ ମୁଖ୍ୟ ଚରିତ୍ର ନିରଞ୍ଜନ, ସ୍ତ୍ରୀ ସୁଷମା ଓ ବଂଧୁ ସୁଧାଂଶୁ - ପ୍ରତ୍ୟେକ ନିଜ ନିଜ ମନସ୍ତତ୍ତ୍ୱର କେନ୍ଦ୍ରବିନ୍ଦୁରେ ଘୂର୍ଣ୍ଣାୟମାନ । ନିରଞ୍ଜଂନ ଓ ସୁଷମା ସ୍ୱାମୀ-ସ୍ତ୍ରୀ । କିନ୍ତୁ ବଂଧୁ ସୁଧାଂଶୁ ଏକ ବ୍ୟର୍ଥ ପ୍ରେମିକ - ଯିଏ ଆତ୍ମା,ପରମାତ୍ମା ଓ ଆଧ୍ୟାତ୍ମବାଦର ନିଗୂଢ ବଳୟ ଭିତରେ ଛନ୍ଦି ହୋଇ ପଡ଼ିଛି । ଏଇ ଧରଣର ଚିନ୍ତା ଭିତରେ ନିଜକୁ ବୁଡ଼େଇ ରଖିଛି । ହେଲେ ଘଟଣାକ୍ରମରେ ସୁଷମା ତା'ର ଏକ ମୁଗ୍ଧ ପ୍ରଣୟିନୀ ସାଜିଛି । ତା' ମାନସ ପଟରେ ସୁଧାଂଶୁର ବ୍ୟକ୍ତିତ୍ୱ ନିଜ ସ୍ୱାମୀର ବ୍ୟକ୍ତିତ୍ୱ ଓ ପୌରୁଷଠାରୁ ଅଧିକ ଆକର୍ଷଣୀୟ ମନେ ହୋଇଛି । ଏହାର ସୂଚନା ପାଇଁ ଧର୍ମ ଓ ଆଧ୍ୟାତ୍ମିକ ଚେତନା ଭିତରେ ଆତ୍ମଗୋପନ କରିଥିବା ସୁଧାଂଶୁର ଭିତର ମଣିଷ ସୁଷମା ପ୍ରତି ଆକର୍ଷିତ ହୋଇ ଯାଇଛି ନିଜ ଅଲକ୍ଷ୍ୟରେ। କିନ୍ତୁ ଭଲ ପାଇବାକୁ ପ୍ରକାଶ କରିବାକୁ ସଂକୋଚବୋଧ କରିଛି । ଏକଦା ସୁପ୍ତା ସୁଷମାର ରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ନିଜର ଅବଦମିତ କାମନାକୁ ରୋଧି ପାରିନାହିଁ । ଆଧ୍ୟାତ୍ମିକତାର ଦୁର୍ଗ ଭିତରେ ବନ୍ଦୀ ହୋଇରହିଥିବା ତା'ର ଯୌନାକାଂକ୍ଷା ସ୍ୱାଭାବିକ ରୂପ ନେଇଛି । ସେ ସୁଷମାକୁ ଚୁମ୍ବନ କରିଛି । କିନ୍ତୁ ଏ ଦୃଶ୍ୟ ନିରଞ୍ଜନର ଆଖିରେ ଧରାପଡ଼ି ଯାଇଛି । ସୁଷମା ଭାଉଜଙ୍କ ପ୍ରତି କରିଥିବା ଅନ୍ୟାୟର ଅନୁଶୋଚନାରେ ଘାରି ହୋଇ ସୁଧାଂଶୁ ଆତ୍ମହତ୍ୟା କରିଛି ।

ମହାପାତ୍ର ନୀଳମଣି ସାହୁଙ୍କର 'ତାମସୀରାଧା' ଆଧ୍ୟାତ୍ମିକ ଚେତନା ଦୃଷ୍ଟିରୁ ଏକ ସଫଳ ଉଦ୍ୟମ । ତୃତୀୟ ପତ୍ନୀ ହେମମୟୀର ଦେହାନ୍ତ ପରେ ଜଡ଼ ପିଣ୍ଡଟାକୁ ଜୁଇରେ ଜଳେଇ ଦେଇ ସାଧୁଚରଣଙ୍କ ଭିତରେ ଏକ ବୈରାଗ୍ୟ ଆସିଛି । ଏ ସଂସାରକୁ ସେ ଅସାର ମଣିଛନ୍ତି, ଗାଁ ପାଖ ଆମ୍ବତୋଟାରେ ଧୁନି ଜାଳି ସେଇଠି ପୁରାଣ ଭାଗବତ ପାଠ କରି ଅବଶିଷ୍ଟ ଜୀବନ ବିତେଇ ଦେବେ ବୋଲି ପଣ କରିଛନ୍ତି । ତାଙ୍କ ଭିତରୁ ଅନୁରଣିତ ହୋଇଛି । ଭକ୍ତ ଚରଣ ଦାସଙ୍କର ମନବୋଧ, ଚଉତିଶାରୁ ଗୋଟେ ପଦ- "ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ, ଘଟ ଛୁଟିଲେ ତୋତେ ବୋଲିବେ ଭୂତ ।" ଏହି ଚରିତ୍ର ପ୍ରସଙ୍ଗରେ ଯେଉଁ ଆଧ୍ୟାତ୍ମ ସଚେତନତାର ପରିପ୍ରକାଶ ଘଟିଛି, ତାହା ପାଠକ ମନରେ ଗଭୀର ରେଖାପାତ କରେ ।

ଔପନ୍ୟାସିକ ଚନ୍ଦ୍ରଶେଖର ରଥଙ୍କର ସାର୍ଥକ ସୃଷ୍ଟି, 'ଯନ୍ତ୍ରାରୂଢ' (୧୯୬୨)

ଉପନ୍ୟାସର ସନାତନ ଚରିତ୍ର ଆଧ୍ୟାତ୍ମିକ ଚେତନାର ନିଛକ ପ୍ରତିଫଳନ । ଗୋଟିଏ ପାଦ ତା'ର ମୋହମାୟାଗ୍ରସ୍ତ ପଙ୍କିଳ ସମାଜରେ ବୁଡ଼ି ରହିଥିଲେ ହେଁ ସୁଦୂରର ଆହ୍ୱାନରେ ଅନ୍ୟ ପାଦଟି ଉନ୍ମୁକ୍ତ ହୋଇ ପଡ଼ିଛି । ଏକ ଚରମ ସତ୍ୟ ଓ ପରମ ବିଶ୍ୱାସ ନିକଟରେ ନିଜକୁ ସଂପୂର୍ଣ୍ଣ ସମର୍ପି ଦେଇ ଦ୍ୱିତୀୟ ପାଦଟିକୁ ବଢ଼େଇ ଦେଇଛି ଅସୀମର ଆହ୍ୱାନରେ । ସ୍ତ୍ରୀ ପୁତ୍ରକୁ ହରାଇଲା ପରେ ସଂସାର ବନ୍ଧନ ତା'ର ଛିନ୍ନ ହୋଇ ଯାଇଛି । ସୁଆଁବାଳୁଆର କୋଷ ଭିତରୁ ପ୍ରଜାପତିଟି ବାହାରି ଆସିଲା ପରି ସେ ବନ୍ଧନମୁକ୍ତ ହୋଇ ଯାଇଛି । ସତ୍ୟାନୁସନ୍ଧିତ୍ସୁ ତା'ର ଆତ୍ମା ଏକ ପରା ଆସ୍ୱାଦରେ ବିଭୋର ହୋଇ ପଡ଼ିଛି । ମୃତ୍ୟୁର ବିଭୀଷିକା ମଧ୍ୟରେ ସେ ଦେଖିଛି ସୃଷ୍ଟି କର୍ତ୍ତାଙ୍କର ମଂଗଳମୟ ଶୁଭ ହସ୍ତର ଇଂଗିତ । ଏଥର ସେ ଏକ ପୂର୍ଣ୍ଣ ଓ ପରିତୃପ୍ତ ମନ ନେଇ ସଂସାର ଛାଡ଼ିଛି । ତୀର୍ଥରୁ ତୀର୍ଥ ଘୁରି ଘୁରି ଶେଷରେ ପୂର୍ଣ୍ଣତାରେ ରୂପାନ୍ତରିତ ହୋଇଛି । ଦିବ୍ୟ ଅନୁଭବର ବହଳ ଆସ୍ତରଣ ଧୀରେ ଧୀରେ ତା'ମନ ଭିତରେ ଗୁଡ଼ାଇ ହୋଇ ଯାଇଛି । ବାସ୍ତବିକ ଆଧ୍ୟାତ୍ମିକ ଚେତନାର ଏକ ସାର୍ଥକ ଅଭିବ୍ୟକ୍ତି ହେଉଛି ସନାତନ ଦାସ ।

ଶାନ୍ତନୁ ଆଚାର୍ଯ୍ୟଙ୍କର ଅଧିକାଂଶ ଉପନ୍ୟାସରେ ଊଣା ଅଧିକେ ଆଧ୍ୟାତ୍ମିକ ଚେତନାର ବର୍ଣ୍ଣନା ହୋଇଥିବା ଲକ୍ଷ୍ୟ କରାଯାଏ । ଶତାବ୍ଦୀର ନଚିକେତା, ନରକିନ୍ନର ଓ ଦକ୍ଷିଣାବର୍ତ୍ତ ପରି ଅଧିକ ମୌଳିକତା ବହନ କରୁଥିବା ଉପନ୍ୟାସରେ ବିଭୁ ପ୍ରସାଦ, ଜର୍ଜ ଓ ରୈକ୍ୟ ପରି ଚରିତ୍ରମାନଙ୍କର ମୂଳ ଉତ୍ସ ଯେ ବେଦ, ଉପନିଷଦ ଓ ପୁରାଣ - ଏଥିରେ ସନ୍ଦେହ ନାହିଁ । ଉପନ୍ୟାସ ଗୁଡ଼ିକରେ କୌଣସି ନିର୍ଦ୍ଦିଷ୍ଟ ମତବାଦ ବଳିଷ୍ଠତା ଅର୍ଜନ କରିନଥିଲେ ହେଁ ମାନବିକତାବାଦ ଯାହା ଭାରତୀୟ ପରମ୍ପରାର ଭିତ୍ତିଭୂମି - ତାହା ଏହି ଚରିତ୍ର ଗୁଡ଼ିକରେ ପରିଦୃଷ୍ଟ ହୁଏ ।

ପ୍ରତିଭା ରାୟଙ୍କ 'ଯାଜ୍ଞସେନୀ' (୧୯୮୫) ଉପନ୍ୟାସରୁ ଆଧ୍ୟାତ୍ମିକ ବର୍ଣ୍ଣନାର ପବିତ୍ରଧାରା ଉପଲବ୍ଧ ହୁଏ । ମହାଭାରତର କୃଷ୍ଣା ଏକ ଦେବୀ ହେଲେ ହେଁ ଔପନ୍ୟାସିକା ତାଙ୍କୁ ସାଧାରଣ ସ୍ତରକୁ ଓହ୍ଲେଇ ଆଣିଛନ୍ତି । ସାଧାରଣ ନାରୀର ଚରମ ସତ୍ୟକୁ ସେ ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି । ପାଣ୍ଡବ ମାନଙ୍କର ସ୍ତ୍ରୀ ହେଲେ ବି ସେ କମ୍ ଲାଞ୍ଛିତା ହୋଇନାହାଁନ୍ତି। ସ୍ୱର୍ଗ ଦ୍ୱାର ତାଙ୍କ ପାଇଁ ରୁଦ୍ଧ ହୋଇଯାଇଛି । ଜୀବନର ସବୁ ଲାଞ୍ଛନା, ନିର୍ଯ୍ୟାତନା, ଦୁଃଖ ଓ ହତାଶାକୁ ପରମ ପୁରୁଷ କୃଷ୍ଣଙ୍କ ପାଦପଦ୍ମରେ ସମର୍ପି ଦେଇଛନ୍ତି। ସେ ନିଜେ ଯେତେବେଳେ ନିଜର ନୁହଁନ୍ତି ତା'ର ଦୁଃଖ ଯନ୍ତ୍ରଣା କାହିଁକି ତା' ନିଜର ହେବ ? ତେଣୁ କୃଷ୍ଣଙ୍କ ନୀଳପଦ୍ମ ପାଦଯୁଗଳରେ ନିଜକୁ ସଂପୂର୍ଣ୍ଣ ସମର୍ପଣ କରିଦେଇ ଉଚ୍ଚାରଣ କରିଛନ୍ତି - 'ହେ କୃଷ୍ଣ ମୁଁ

ତୁମର', ସେହିପରି ଦେହାତୀତ (୧୯୮୬)ଉପନ୍ୟାସରେ 'ପଙ୍ଗୁସ୍ୱାହା' ନିଜକୁ ସର୍ବଶକ୍ତିମାନ ଈଶ୍ୱରଙ୍କ ନିକଟରେ ସମର୍ପଣ କରି ଦେଇଛି । ନିଜ ପାଇଁ ନିଜ ଭିତରେ ଟିକେ ହେଲେ ବି ଦୁଃଖ ନାହିଁ । ଯେଉଁ ଦେହରେ ନାରାୟଣଙ୍କର ଅବସ୍ଥାନ, ସେ ଦେହହୀନ ହୋଇ ନ ପାରେ । ପରଜନ୍ମ ନିରର୍ଥକ ନୁହେଁ । ମହାଚେତନାର ଉଦ୍‌ବୁଧ ହୋଇ ସେ ନିଜର ଗୁଣର ମହକରେ ସଭିଙ୍କ ହୃଦୟକୁ ମହକେଇ ଦେଇଛି । ସେ ନିଜକୁ କ୍ଷୁଦ୍ର ଓ ହେୟ ମନେ କରିନାହିଁ । ଅନୁଭବ କରିଛି ଦେହ, ଆତ୍ମା ଓ ମନର ପରିପୂର୍ଣ୍ଣତା ।

କେବଳ ଏତିକି ନୁହେଁ, ଓଡ଼ିଆ ଉପନ୍ୟାସରେ ଆଧ୍ୟାତ୍ମିକ ଚେତନାର ଏକ ବଳିଷ୍ଠ ପରମ୍ପରା ସୃଷ୍ଟି ହୋଇ ସାରିଛି । ଦୟାଲାଲ ଯୋଶୀ, ଡ଼ଃ ନୃସିଂହ ଚରଣ ପଣ୍ଡା, ସୀତାଦେବୀ ଖାଡ଼ଙ୍ଗା, ଶୁକଦେବ ସାହୁ, ଔପନ୍ୟାସିକ ଯତୀନ୍ଦ୍ର କୁମାର, ଚୋରାଚାନ୍ଦ ମିଶ୍ର, ବଳରାମ ପଟ୍ଟନାୟକ, ଅନ୍ନଦା ପ୍ରସାଦ ରକ୍ଷିତ, ଗଣେଶ୍ୱର ମିଶ୍ର, ବିଜୟିନୀ ଦାସ, ବିକ୍ରମ ଦାସ, ବୀଣା ମହାପାତ୍ର, ଲକ୍ଷ୍ମୀନାରାୟଣ ମହାନ୍ତି, ନରସିଂହ ମିଶ୍ର, ଭାଗିରଥୀ ନେପାକ, ସାତକଡ଼ି ହୋତା, ଦଶରଥ ସାମଲ, ଯଗେଶ୍ୱର ମିଶ୍ର, ସୁଲୋଚନା ଦାସ, ରାଧାନାଥ ରଥ, ଶାନ୍ତି ମହାପାତ୍ର (ବଳ), ଗାୟତ୍ରୀ ବସୁ ମଲ୍ଲିକ, ରାମଚନ୍ଦ୍ର ବେହେରା, ଅନାଦି ସାହୁ ପ୍ରମୁଖ ଔପନ୍ୟାସିକ ଗଣ । ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ଅଭିବୃଦ୍ଧି ସଂଶୋଧିତ କରିବା ସଂଗେ ସଂଗେ ଆଧ୍ୟାତ୍ମିକ ଚେତନାର ପରମ୍ପରାକୁ ଉଜ୍ଜୀବିତ କରି ଆସିଛନ୍ତି । ଉକ୍ତ ପ୍ରବନ୍ଧର କ୍ଷୁଦ୍ର ପରିସୀମା ମଧ୍ୟରେ ସେ ସବୁକୁ ଆକଳନ କରିବା ସଂଭବ ନୁହେଁ । ତେଣୁ ଏ ସଂପର୍କରେ ଏକ ଦୀର୍ଘ ଗବେଷଣାର ଆବଶ୍ୟକତାକୁ ଏଡ଼ାଇ ଦିଆଯାଇ ନପାରେ । ❀

ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ନୀଳଗିରି ମହାବିଦ୍ୟାଳୟ,ବାଲେଶ୍ୱର

# ଆଧୁନିକ ଓଡ଼ିଆ ସାହିତ୍ୟରେ ଆଧାତ୍ମିକତା ଓ ସମାଜ ଜୀବନରେ ଏହାର ପ୍ରଭାବ

☆ ନରହରି ଦାସ

ଆଧ୍ୟାତ୍ମିକତା କହିଲେ ମଣିଷର ପରମାତ୍ମା ପରମେଶ୍ୱରଙ୍କ ସହ ଚିରନ୍ତନ ଭାଗବତ ନିବିଡ଼ ସମ୍ପର୍କକୁ ହିଁ ବୁଝାଇଥାଏ । ପୁରୁଷୋତ୍ତମ ପରମାତ୍ମା କେବଳ ସ୍ରଷ୍ଟା ନୁହଁନ୍ତି, ତାଙ୍କର ସୃଷ୍ଟିର ଅନ୍ତଃସ୍ୱର ଓ ବାହ୍ୟସ୍ୱର ମଧ୍ୟ ଅଟନ୍ତି । ମଣିଷର ହୃଦୟ କନ୍ଦର ହିଁ ତାଙ୍କର ଆବାସସ୍ଥଳୀ ।

ସେ ସ୍ରଷ୍ଟା, ସେ ପରମାତ୍ମା । ଜୀବାତ୍ମାର ଚିର ସହଚର । ବେଦ କହେ – 'ଅହଂ ବ୍ରହ୍ମାଽସ୍ମି' । ମୁଁ ବ୍ରହ୍ମ ଅଟେ ଅର୍ଥାତ୍ ଗୋଟିଏ ପିଞ୍ଜରାରେ ଦୁଇଟି ପକ୍ଷୀ । ଶରୀର ରୂପକ ପିଞ୍ଜରା ଭିତରେ ଦୁଇଟି ପକ୍ଷୀ ନିବାସ କରନ୍ତି ।

ଗୋଟିଏ କେବଳ ନିଶ୍ଚୁପ ହୋଇ ଶାଶ୍ୱତ ଆନନ୍ଦରେ ବିଚରଣ କରେ ଏବଂ ଅନ୍ୟଟି ଶରୀର ଗ୍ରହଣ କରୁଥିବା ଖାଦ୍ୟ ପାନୀୟ ବ୍ୟବହାର କରୁଥିବା ବସ୍ତୁରେ ଭାଗ ନନେଇ ମଣିଷକୁ ସତର୍କ ଘଣ୍ଟି ଶୁଣାଏ । ତୁମେ କେବଳ ଶରୀର ନୁହଁ ଯାହାକୁ ନେଇ ତୁମେ ଏତେ ବ୍ୟସ୍ତ ରହୁଛ, ଶରୀର ପାଇଁ ଯାହା କିଛି କରୁଛ, ସମସ୍ତ ସମୟ ଅତିବାହିତ କରୁଛ; ଥରେ ମାତ୍ର ଦେଖ, ଅନ୍ତରର ଗଭୀରତା କେତେ, ଅନ୍ତରରେ ଅନନ୍ତଙ୍କ ଅବସ୍ଥାନ, ସସୀମର ନିବାସ, ମୁଁ ସହିତ ମୁଁ ନୁହେଁର ଚେତନାର ପ୍ରକାଶ, ଏହି ମାୟା ମରୀଚିକା ଆରପାରିରେ ଯେଉଁ ସମ୍ପର୍କ ଅଛି ତାହା ହିଁ ବାସ୍ତବ ଆଧ୍ୟାତ୍ମିକତା ।

ଆଧୁନିକ ଓଡ଼ିଆ ସାହିତ୍ୟ ଓ ସାମାଜିକ ଜୀବନ ଉପରେ ଆଧ୍ୟାତ୍ମିକତାର ପ୍ରଭାବ କେତେ, ତାହା କଳନା କରିବାର ବାସ୍ତବ ସମୟରେ ଆମେ ପହଞ୍ଚି ଯାଇଛୁ । ସାହିତ୍ୟ, ସାମାଜିକ ଜୀବନରେ ଏକ କୃତି ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁ ସାହିତ୍ୟ ତାହାର ସାମାଜିକ ଜୀବନ ଯାତ୍ରାର ନିଛକ ଚିତ୍ରପଟ ପ୍ରଦାନ କରିପାରେ ସେ ସାହିତ୍ୟ ସେତେ ସମୃଦ୍ଧଶାଳୀ ହୋଇପାରେ । ଏହା ସାହିତ୍ୟର ଚିରାଚରିତ ଧାରା ।

ଆଜି ଆଧୁନିକତା ସେହି ପୁରାତନ ସାହିତ୍ୟିକ ଚିନ୍ତାଧାରାକୁ ଜଳାଞ୍ଜଳି ଦେଇ ଜୀବନ ଯାତ୍ରାର ନୂତନ ଶୈଳୀ ସହ ସାହିତ୍ୟର ପ୍ରଖର ସ୍ରୋତର ଧାରାରେ ମଧ୍ୟ

ନୂତନତର ସ୍ପନ୍ଦନ ଆଣି ଦେଇଛି । ତାହାର ଆଭିମୁଖ୍ୟ କ'ଣ ହୋଇପାରେ ଏବଂ ପୁରାତନ ଓ ନୂତନ ଜୀବନ ଯାତ୍ରାର ପ୍ରଣାଳୀରେ କେତେ ପାର୍ଥକ୍ୟ ବିଦ୍ୟମାନ ତାହା ପ୍ରଣିଧାନର ବିଷୟ ।

ଜୀବନ ଯାତ୍ରାର ଶୈଳୀର ପରିବର୍ତ୍ତନ, ସାହିତ୍ୟର ଧାରାକୁ ଧକ୍‌କା ଦିଏ । ଏହି ଧକ୍‌କା ଏତେ ବିକଟାଳ ଓ ଏତେ ବିଭତ୍ସ ରୂପରେ ଛିଡ଼ା ହୁଏ ଯେ, ଏହା 'କାଳ'ରୂପ ଗ୍ରହଣ କରେ । ଏହି 'କାଳ'ସୃଷ୍ଟି ଚକ୍ରରେ ସମସ୍ତ ପରିବର୍ତ୍ତନର କାରଣ ହୋଇଥାଏ । ସାହିତ୍ୟିକ ସ୍ରଷ୍ଟାଟିଏ, ସାରସ୍ୱତ ସୃଷ୍ଟିର ସେ ସାମାଜିକ ତରଙ୍ଗରେ ଧକ୍‌କା ଖାଏ ଓ ସେହି ଧକ୍‌କା ସାହିତ୍ୟରେ ପୁଷ୍ପ ହୋଇ ପ୍ରସ୍ଫୁଟିତ ହୁଏ ।

ଓଡ଼ିଆ ସାହିତ୍ୟର ଜନ୍ମ ଜାତକକୁ ଅନୁଧ୍ୟାନ କଲେ ଜଣାଯାଏ, ସାରଳା ଯୁଗ, ପଞ୍ଚସଖା ଯୁଗ, ସତ୍ୟବାଦୀ ଯୁଗ, ସବୁଜ ଯୁଗ ଓ ସ୍ୱାଧୀନତା ପରବର୍ତ୍ତୀ ଯୁଗର ସାହିତ୍ୟ ସୃଷ୍ଟିର ରଚନାତ୍ମକ ଶୈଳୀର କି ପରିବର୍ତ୍ତନ ଘଟିଛି । ପୁଣି ପରିବର୍ତ୍ତନ ଆଧ୍ୟାତ୍ମିକତା ଦୃଷ୍ଟିଭଙ୍ଗୀରୁ ବିଚାର କରାଯିବା ଉଚିତ ।

ସାହିତ୍ୟର ପାଠକ ଏହା ବେଶ୍ ଉପଲବ୍ଧି କରିପାରିବ ଯେ ଆଧୁନିକ ଓ ଅତ୍ୟାଧୁନିକ ଓଡ଼ିଆ ସାହିତ୍ୟ, ସାହିତ୍ୟିକ ଚିନ୍ତା ଚେତନାର ପ୍ରେରଣାଦାୟୀ । ଆଧ୍ୟାତ୍ମିକତା ଉପରେ ପର୍ଯ୍ୟବେସିତ ନୁହେଁ । ସାହିତ୍ୟ ପରମାତ୍ମା ପରମେଶ୍ୱରଙ୍କୁ ନେଇ ଗଢ଼ି ଉଠିନାହିଁ । ତାଙ୍କୁ ଭୁଲିଯାଇ ସାହିତ୍ୟ ସୃଷ୍ଟି ହେଉଛି । ଆଧୁନିକ ନଭଶ୍ଚୁମ୍ବୀ ପ୍ରାସାଦ ଗଠନ କରି, ତା'ର ଏକାନ୍ତ ପ୍ରକୋଷ୍ଠରେ ସୁରା ଓ ସାକୀର ଭୋଗ ଲିପ୍‌ସା, ପୃଥିବୀରୁ ଆକାଶ ଯାଏ, କେତେ ଲାଭ ଆଦାୟର ହିସାବ ନିକାଶ, କେତେ ତଣ୍ଟି କାଟି ଧନୀ ହେବାର ଯେଉଁ ସ୍ୱପ୍ନ, ଧନ ଦୌଲତ, ନାରୀ ଉପଭୋଗର ଯେଉଁ ଅଭୀପ୍ସା ଏବଂ ପୁରୁଷକୁ ସମାଜର ଗରୀୟାନ୍ ଭୂମିକାରୁ ପଛକୁ ଠେଲି ନାରୀ ସ୍ୱାଧୀନତାର ଉତ୍ତାଳ ଢେଉ, ନାରୀ ପୁରୁଷର ସମକକ୍ଷର ଦାବୀ ଓ ଅନ୍ୟ ପକ୍ଷରେ ସେଇ ନାରୀର ଆଧୁନିକ ପୋଷାକ ପରିଚ୍ଛଦ, ଅଙ୍ଗ ଅବୟବ ପୁରୁଷକୁ ବିଭ୍ରାନ୍ତ କରି ଜୀବନଯାତ୍ରାର ସୌଧକୁ ଆଧୁନିକତାର ରଙ୍ଗରେ ଚିତ୍ରିତ କରି ବିଚିତ୍ର ଢଙ୍ଗରେ ସାମାଜିକ ଜୀବନ ଗଢ଼ିବାଟା ହିଁ ଆଧୁନିକତା ଅଟେ । ପରମାତ୍ମାଙ୍କ ସହ ସଂପର୍କ ଭୁଲିଯାଇ ଯେଉଁ ଜୀବନର ଶୈଳୀ ସାହିତ୍ୟରେ ପ୍ରତିଫଳିତ ହୋଇଛି ତାହା ହିଁ ଆଧୁନିକ ସାହିତ୍ୟର ଚିନ୍ତାଧାରାର ଏକ ପ୍ରଧାନ ପ୍ରତିବିମ୍ବ କହିଲେ ପ୍ରାୟତଃ ଭୁଲ୍ ହେବ ନାହିଁ ।

ଭଗବାନ ଶ୍ରୀକୃଷ୍ଣ ଗୀତାରେ ଅର୍ଜ୍ଜୁନଙ୍କୁ କହିଛନ୍ତି -

"ଈଶ୍ୱର ସର୍ବଭୂତାନାଂ ହୃଦ୍ଦେଶେର୍ଜ୍ଜୁନ ତିଷ୍ଠତି
ଭ୍ରାମୟନ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ।"

ତେଣୁ ଆଧୁନିକ ସାହିତ୍ୟର ନାୟକ, ନାୟିକା ବା ମୁଖ୍ୟ ଚରିତ୍ର ଗୁଡ଼ିକ ନିଜ ନିଜ ସ୍ତରରେ ପରମାତ୍ମାଙ୍କୁ ଭୁଲିଯାଇ ମଦମତ୍ତ ଅଶରୀରୀ ହତ୍ୟାକାରୀ ସାଜି ସମାଜକୁ ଶୋଷଣ, ଲୁଣ୍ଠନ, ପଳପଳ ହତ୍ୟା କରି ନିଜକୁ ଐନ୍ଦ୍ରଜାଲିକ ସଜାଇ ସମାଜ ଆଖିରେ ଧରା ଦେଇ ନାହାଁନ୍ତି । ହେଲେ 'ଲୁଚିଛି ନା ଗୋଡ଼ ଦୁଇଟା ଦିଶୁଛି' ଭଳି ସମାଜର ସାହିତ୍ୟିକଙ୍କ ଆଖିରେ ଧୂଳି ଫିଙ୍ଗି ପାରିବେ ନାହିଁ । ସାହିତ୍ୟିକ ହିଁ ଆଜି ସି.ଆଇ.ଡ଼ି. ଭୂମିକାର ଅବତୀର୍ଣ୍ଣ ହୋଇଛି ।

ସାହିତ୍ୟିକକୁ ଆଜି ପରମାତ୍ମା ଚିନ୍ତା ଚେତନାର ଭୂମିକା ଗ୍ରହଣ କରିବାକୁ ପଡ଼ିବ । ସମାଜର ସାଧାରଣ ଜୀବନକୁ ବୁଝାଇବାକୁ ହେବ । ତୁମେ ସାମାନ୍ୟ ମଣିଷ ନୁହଁ, ତୁମେ ହିଁ ଭଗବାନଙ୍କର ଛବି ଅଟ । ସ୍ମରଣ କରାଇ ଦେବାକୁ ହେବ, ତୁମେ ମାଙ୍କଡ଼ର ସନ୍ତାନ ନୁହଁ, ଅମୃତସ୍ୟ ପୁତ୍ର । ତାହେଲେ ହୁଏତ ସମାଜ ରକ୍ଷା ହୋଇ ପାରିବ । ନ ହେଲେ ଯେଉଁ ସ୍ରୋତରେ ଆଜି ସମାଜର ଜୀବନ ଉଦ୍‌ଭ୍ରାନ୍ତ ହୋଇ ଭାସି ଯାଉଛି ସେ କାଳର କରାଳ ଗର୍ଭରେ ଲୀନ ହୋଇଯିବ । ଆମେ ସାହିତ୍ୟକୁ ସମାଜର, ସଭ୍ୟତାକୁ ଶବବାହକ ହେବାକୁ ଦେବୁ ନାହିଁ, ବରଂ ପ୍ରଚାର କରିବୁ 'ହରି ନାମ ସତ୍ୟ ହେ, ରାମ ନାମ ସତ୍ୟ ହେ' - ଏଇଥିରେ ହିଁ ଓଡ଼ିଆ ପ୍ରାଣ ପୁଲକିତ ହେବ, ଓଡ଼ିଆ ସାହିତ୍ୟର ସୌଧ ସୃଷ୍ଟି ହେବ । ❋

ବରିଷ୍ଠ ଅଧ୍ୟାପକ, ଇଂରାଜୀ ବିଭାଗ
ସୁବର୍ଣ୍ଣରେଖା ମହାବିଦ୍ୟାଳୟ, ବାଲିଆପାଳ

# ସାଂସ୍କୃତିକ ଦେବତା - ଶ୍ରୀ ଜଗନ୍ନାଥ

☆ ଶ୍ରୀଯୁକ୍ତ ଜୟ କୁମାର ମିଶ୍ର

"ଜଗନ୍ନାଥ ସ୍ୱାମୀ, ନୟନପଥଗାମୀ, ଭବତୁ ମେ ।"

ଶ୍ରୀଜଗନ୍ନାଥ - ଜଗତର ନାଥ । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଆଦି ତିନି ଜଗତର 'ନାଥ' ଅର୍ଥାତ 'ପ୍ରଭୁ' ଶ୍ରୀଜଗନ୍ନାଥ । ତାଙ୍କର ଆଦେଶରେ ଜଗତ୍ ପରିଚାଳିତ । ସେ ହିଁ ଜଗତର ହର୍ତ୍ତା-କର୍ତ୍ତା-ବିଧାତା । ସେ ହିଁ ନାଥ ବା ପ୍ରଭୁ । ସେ ମଧ୍ୟ 'ଜଗବନ୍ଧୁ' ରୂପେ ବିଦିତ । ପୁରୁଷ ସୃଷ୍ଟିରେ ଜଗନ୍ନାଥ 'ମହାପୁରୁଷ' । 'ବନ୍ଦେ ମହାପୁରୁଷ ତେ ଚରଣାବିନ୍ଦଂ ।' ପୁରୁଷ କହିଲେ ଏଠାରେ ପୁଂଲିଙ୍ଗଧାରୀ ପ୍ରାଣୀବାଚକ ଜୀବ ବିଶେଷ ନୁହେଁ, ସୂକ୍ଷ୍ମ ପରମାତ୍ମାରୂପୀ ପୁରୁଷର ସ୍ଥୁଳ ରୂପ ମାତ୍ର । ଜଗନ୍ନାଥ ହେଉଛନ୍ତି ସୂକ୍ଷ୍ମପୁରୁଷ ବା 'ପୁରୁଷୋତ୍ତମ' । ତାଙ୍କୁ ହିଁ ବେଦରେ 'ସହସ୍ରଶୀର୍ଷ ପୁରୁଷ' ଆଖ୍ୟା ଦିଆଯାଇଛି । ସୃଷ୍ଟି, ସ୍ଥିତି, ସଂହାରକର୍ତ୍ତା ଜଗଦୀଶ୍ୱର ରୂପେ ସେ ଯେପରି 'ଜଗନ୍ନାଥ' ସେହିପରି ମାୟାବୃତ, ଜୀବ ଜଗତର 'ଅହଂ' ବା 'ମୁଁ' ଭାବରେ 'ଜଗବନ୍ଧୁ' । ଏଣୁ ସେ ଭେଦାଭାବ ଶୂନ୍ୟ ବା ଅଚିନ୍ତ୍ୟ ଭେଦାଭାବ ।

ବ୍ରହ୍ମ ରୂପରେ ପୁରୀ ଶ୍ରୀମନ୍ଦିରରେ ଅଧିଷ୍ଠିତ ଶ୍ରୀଜଗନ୍ନାଥ ପରମାତ୍ମା ବିଷ୍ଣୁଙ୍କର ପ୍ରତୀକ । ତାଙ୍କରି ଠାରୁ ଅବତାରର ସୃଷ୍ଟି ଏବଂ ପ୍ରତ୍ୟେକ ଅବତାରରେ ମାନବ ସେବା ଶ୍ରୀଜଗନ୍ନାଥଙ୍କର ଏକମାତ୍ର ଲକ୍ଷ୍ୟ । ସେ ହେଉଛନ୍ତି ସମସ୍ତ ଅବତାରର ମୂଳବୀଜ ଓ ବିଶ୍ରାମସ୍ଥଳ । ପ୍ରଥମେ ସେ ସନତ୍, ସନନ୍ଦନ, ସନାତନ ଓ ସନତ କୁମାର ଏହି ଚାରି ଋଷି ରୂପରେ ଅବତାର ଗ୍ରହଣ କରିଥିଲେ । ଏହି ଅବତାର ମାଧମରେ ସେ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିଲେ । ପରେ ସେହି ଜଗତ ପାଳକ ବିଷ୍ଣୁ ବରାହ, ନାରଦ, ନରନାରାୟଣ ଋଷି, କପିଳ ମୁନି,ଋଷି ଶ୍ରେଷ୍ଠ ଦତ୍ତାତ୍ରେୟ, ଋଷଭ ଦେବ, ମହାରାଜା ପୃଥୁ, ମତ୍ସ୍ୟ, କଚ୍ଛପ, ଧନ୍ୱନ୍ତରୀ, ମୋହିନୀକନ୍ୟା, ନୃସିଂହ, ବାମନ, ଭୃଗୁପତି ପର୍ଶୁରାମ, ବ୍ୟାସଦେବ, ପୁରୁଷୋତ୍ତମ ରାମଚନ୍ଦ୍ର, କୃଷ୍ଣ ଓ ବଳରାମ, ବୁଦ୍ଧଦେବ ପ୍ରଭୃତି ନାନା ରୂପରେ ଅବତାର ଗ୍ରହଣ କରି ଯୁଗେ ଯୁଗେ ଧରା ବକ୍ଷରୁ ଦୁଷ୍ଟ ନିପାତ କରି ସନ୍ଥ ପାଳନ କରିଛନ୍ତି । ଏ ସମସ୍ତ ଅବତାରର ମୂଳକର୍ତ୍ତା ହେଉଛନ୍ତି ଶ୍ରୀକ୍ଷେତ୍ରର କଳ୍ପବଟ ମୂଳ ନିବାସୀ ଶ୍ରୀଜଗନ୍ନାଥ ।

ସତ୍ୟଯୁଗରେ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ମାଧ୍ୟମରେ ସେ ଦାରୁବ୍ରହ୍ମ ରୂପରେ ଆବିର୍ଭୂତ ହୋଇ ନୀଳାଚଳ ଧାମ ଠାରେ ତାଙ୍କର ସମସ୍ତ ମାନବଲୀଳା ସମ୍ବଳିତ କାର୍ଯ୍ୟକ୍ରମକୁ ଯୁଗ ଯୁଗ ଧରି ସମ୍ପାଦନ କରି ଆସୁଛନ୍ତି ।

ଜଗନ୍ନାଥଙ୍କର ଅପର ନାମ 'ଦାରୁବ୍ରହ୍ମ' । ଅନାଦି କାଳରୁ ଜଗନ୍ନାଥ 'ଦାରୁ' ରୂପରେ ଉପାସିତ ହୋଇ ଆସୁଛନ୍ତି । କପିଳସଂହିତାରେ ଉକ୍ତି ଅଛି - "କ୍ଷେତ୍ରଂ ନୀଳାଚଳଂ ପୁଣ୍ୟଂ ଦାରୁବ୍ରହ୍ମ ସ୍ୱରୂପିଣଃ ।" ବିଭିନ୍ନ ପୁରାଣରେ ମଧ୍ୟ ଏ ସମ୍ବନ୍ଧରେ ଉଲ୍ଲେଖ ଅଛି । ଦାରୁରେ ବ୍ରହ୍ମତ୍ୱ ଆରୋପ ହୋଇସାରିବା ପରେ ଜଗନ୍ନାଥ କେବଳ 'ଦାରୁ' ରୂପେ ନ ରହି 'ଦାରୁବ୍ରହ୍ମ ରୂପରେ ବିଶ୍ୱରେ ପ୍ରସିଦ୍ଧି ଲାଭ କଲେ ।

ଏହା ପ୍ରଥମେ ପୁରାଣ ଯୁଗରେ ଆରମ୍ଭ ହୋଇ ପରବର୍ତ୍ତୀ ସମୟରେ ବିସ୍ତାର ଲାଭ କରିଛି । 'ବ୍ରହ୍ମ' ଯୋଗରେ 'ଦାରୁ' ଯେପରି ବ୍ରାହ୍ମଣ୍ୟ ହୋଇ ପଡ଼ିଲା, ଶାବରମୂଳ ହୋଇଥିବା ଯୋଗୁଁ ଇତର ଗୋଷ୍ଠୀର ଆରାଧ୍ୟ ହେବାର ପ୍ରତିବନ୍ଧକ ରହିଲା ନାହିଁ । କିନ୍ତୁ ଜଗନ୍ନାଥଙ୍କର ଏହି ବ୍ରହ୍ମ ରୂପରେ ପ୍ରତିଷ୍ଠା ପୁରାଣ ଯୁଗରେ ସୂତ୍ରପାତ ହୋଇଥିବା ପ୍ରମାଣ ମିଳେ । ଅବନ୍ତୀ ରାଜା ଇନ୍ଦ୍ରଦ୍ୟୁମ୍ନ ଉତ୍କଳକୁ ଆସି ବିଶ୍ୱାବସୁ ଶବର ପୂଜିତ ନୀଳକାନ୍ତ ବିଗ୍ରହର ଅଦର୍ଶନରେ ଯେତେବେଳେ ପ୍ରାୟୋବେଶନ କରିବାକୁ ମନସ୍ଥ କଲେ ସେତେବେଳେ ସ୍ୱପ୍ନାବିଷ୍ଟ ଦାରୁ ସମୁଦ୍ରରେ ଭାସି ଆସିଲା ଏବଂ ମୂର୍ତ୍ତି ଗଠନ ପୂର୍ବକ ତାହା ପ୍ରତିଷ୍ଠା କରାଗଲା । ପରମମୁକ୍ତି ପ୍ରଦାନ କରିବାକୁ ଦାରୁରୂପୀ ଜଗନ୍ନାଥ କେବଳ ସମର୍ଥ ଅଟନ୍ତି । ଦୁରାତ୍ମା ମଧ୍ୟ ଏହାକୁ ଦର୍ଶନ କରି ବନ୍ଧୁତ୍ୱର ସୁଖ ଲାଭ କରିଥାଏ । ଯେକୌଣସି ଅବସ୍ଥାରେ ଯେ କୌଣସି ସ୍ଥାନରେ ଆବ୍ରହ୍ମଚଣ୍ଡାଳ ଯେକୌଣସି ଲୋକ ଏହାଙ୍କ ଦର୍ଶନମାତ୍ରେ ମୁକ୍ତିଲାଭ କରନ୍ତି । ଏହି ଦାରୁବ୍ରହ୍ମ ହେଉଛନ୍ତି ଦୁଃସ୍ଥ ଓ ଦରିଦ୍ରର ବନ୍ଧୁ । ତେଣୁ ସେ 'ଜଗବନ୍ଧୁ' ନାମରେ ପରିଚିତ ।

ଜଗନ୍ନାଥ ହେଉଛନ୍ତି ଭାରତୀୟ ଧର୍ମ ସଂସ୍କୃତିର ଏକ ଜାଜ୍ୱଲ୍ୟମାନ ପ୍ରତୀକ । ଜଗନ୍ନାଥ ହେଉଛନ୍ତି 'ସାଂସ୍କୃତିକ ଦେବତା' ଯାହାଙ୍କ ସହିତ ମାନବୀୟ ସଂସ୍କୃତିର ପରାକାଷ୍ଠା ଓତଃପ୍ରୋତ ଭାବେ ଜଡ଼ିତ । ଜଗନ୍ନାଥଙ୍କ ମୂର୍ତ୍ତି ଗଠନ କାଳରୁ ଆରମ୍ଭ କରି ଯାତ୍ରା ବିଧାନ ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ଏହା ସୁସ୍ପଷ୍ଟ ।

ଜଗନ୍ନାଥଙ୍କ ମୂର୍ତ୍ତି କଳ୍ପନା, ଛତିଶ ଖଟଣି, ଛତିଶା ନିଯୋଗ, ଛପନ ଭୋଗ ଇତ୍ୟାଦିରେ ଦେବତାର ଭାବନା ପୂରାପୂରି ମାନବିକ । ଜଗନ୍ନାଥ, ବଳଭଦ୍ର,

ସୁଭଦ୍ରାଙ୍କର ଶରୀର ବର୍ଣ୍ଣର କଳ୍ପନା ମାନବ ଶରୀର ରଂଗ ସଦୃଶ । କୃଷ୍ଣ ଶ୍ୱେତ ଏବଂ ହଳଦୀ - ଏହି ତ୍ରିବର୍ଣ୍ଣ କଳ୍ପନା ଆଧ୍ୟାତ୍ମିକ ନୁହେଁ । ପୁରାପୁରି ଲୌକିକ ଏବଂ ସାଂସ୍କୃତିକ । ଯେକୌଣସି ଅବସ୍ଥାରେ ଗୃହସ୍ଥର ଗୃହକୁ ପ୍ରବେଶ କଲା ଭଳି ଜଗନ୍ନାଥ ମନ୍ଦିରରେ ସମସ୍ତଙ୍କର ସବୁ ସମୟରେ ପ୍ରବେଶାଧିକାର ରହିଛି । ଏହା ମାନବ ଧର୍ମ ଉଦାର ସଂସ୍କୃତିର ନିଦର୍ଶନ । ଜଗନ୍ନାଥଙ୍କ ମନ୍ଦିରରେ ପୟାଶ୍ରାଦ୍ଧ ବିଧି ଓ ଦୀପାବଳୀ ଉତ୍ସବ ଏକ ଉଦାତ୍ତ ମାନବିକତାର କଳ୍ପନା । ନରଲୋକ, ପିତୃଲୋକ ଓ ଦେବଲୋକ ଏହି ତ୍ରିଲୋକର ନାଥ ଜଗନ୍ନାଥ । ଜଗନ୍ନାଥ ମନ୍ଦିରରେ ଉପାସ୍ୟ ଉପାସକ । ସେବ୍ୟ -ସେବକ, ଅନ୍ୟ ଭାବରେ କହିଲେ ପ୍ରଭୁ ଓ ଦାସ ମଧ୍ୟରେ ପାର୍ଥକ୍ୟ ନାହିଁ । ଦୁହେଁ ସମାନ । ଏହା ହିଁ ମାନବ ସଂସ୍କୃତି -. ଆଦର୍ଶ ସଂସ୍କୃତି - ଯାହା ଶ୍ରୀଜଗନ୍ନାଥଙ୍କ ବ୍ୟତୀତ ଅନ୍ୟତ୍ର ଦେଖାଯାଏ ନାହିଁ ।

ଶ୍ରୀଜଗନ୍ନାଥ କୌଣସି ସଂପ୍ରଦାୟର ନୁହଁନ୍ତି ବା ଧାର୍ମିକ ଦେବତା ମଧ୍ୟ ନୁହଁନ୍ତି । ସେ ସଂସ୍କୃତିର ଦେବତା । ଏହି ସଂସ୍କୃତି ଜଗନ୍ନାଥ ସଂସ୍କୃତି । ଏହା ଭାରତର ସଂସ୍କୃତି - ମାନବ ସମାଜର ସଂସ୍କୃତି । ଏହା ସାର୍ବଜନୀନ - ଅନନ୍ୟ ସାଧାରଣ । ଏଠାରେ ଧାର୍ମିକତାର ସମ୍ପର୍କ ନାହିଁ, ଆଧ୍ୟାତ୍ମିକତାର ସଂକେତ ନାହିଁ । ତାହା ହୋଇଥିଲେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକା ପାତ୍ରରେ ଭୋଜନ କରନ୍ତେ ନାହିଁ କିମ୍ବା ସଂଖୁଡ଼ି, ନିସଂଖୁଡ଼ିର ସମାନତା ରହନ୍ତା ନାହିଁ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ଏହି ତ୍ରିମୂର୍ତ୍ତି ପ୍ରତିଷ୍ଠାରେ ଭାଇ ଭଉଣୀ ସମ୍ବନ୍ଧ ରହିଛି । ଏହି ସଂପର୍କ ମାନବ ସଂସ୍କୃତିର ଧ୍ୟେୟ । ବ୍ୟକ୍ତି ବା ଜାତିର ଜୀବନଯାପନ ପ୍ରଣାଳୀ ମଧ୍ୟ ସଂସ୍କୃତିର ଅନ୍ୟତମ ସ୍ୱାସ୍ଥ୍ୟୋପଯୋଗିତା, ବେଶ ପୋଷାକରେ ବିଚାର ନିଶ୍ଚିତ ଭାବେ ସଂସ୍କୃତିର ପରିଚାୟକ । ଏହି ପରିପ୍ରେକ୍ଷୀରେ ବଡ଼ ଦେଉଳର ନିର୍ମାଣ କୌଶଳ ମହାପ୍ରସାଦ ରୂପେ ସ୍ୱୀକୃତ ଅବଢ଼ା, ଡ଼ାଲି, ଶାଗ, ବେସର, ମହୁର ସହିତ ଛପନ ପ୍ରକାର ଭୋଗ ସାମଗ୍ରୀ ଏବଂ ତା' ସହିତ ଘୃତ, ମହୁ, ଶର୍କରାଦିର ବିଚିତ୍ର ସମ୍ମିଧାନ ଦେଖିଲେ ଜଣାଯାଏ ଜଗନ୍ନାଥ ଚେତନା ଭାରତୀୟ ଜୀବନଧାରଣ ପ୍ରଣାଳୀର ଏକ ସମ୍ମାନିତ ପରମ୍ପରା ଉପରେ ଆଧାରିତ । ଏହା ବ୍ୟତୀତ ଜଗନ୍ନାଥଙ୍କର ସାଧାରଣ ବେଶ ଠାରୁ ଆରମ୍ଭ କରି ବଡ଼ସିଂହାର ବେଶ ଭୂଷାଦିର ଯେଉଁ ବିଚିତ୍ର ପରିପାଟୀ ତାହା ମାନବ ଗୋଷ୍ଠୀର ଆଦର୍ଶସ୍ଥାନୀ । ଏହା ଏକ ମାନବୀୟ ସଂସ୍କୃତି ।

କେତେକ ସମାଲୋଚକଙ୍କ ମତରେ ସଂସ୍କୃତିର ସମ୍ପର୍କ ସାମାଜିକ ଚଳଣି ସହିତ ମଧ୍ୟ ଏକାକାର କରାଯାଇପାରେ । ଜଗନ୍ନାଥଙ୍କ ଉପାସନାରେ ସାମାଜିକ ଚଳଣି

ଅତି ଚମତ୍କାର ଭାବରେ ଜଡ଼ିତ । ଋତୁଚକ୍ରର ଆବର୍ତ୍ତନ ଅନୁସାରେ ବଡ଼ ଦେଉଳରେ ଜଗନ୍ନାଥଙ୍କର ବିଭିନ୍ନ ପର୍ବ ପର୍ବାଣୀ ପାଳନ କରାଯାଏ । ଶୀତ କଷ୍ଟରୁ ମୁକ୍ତି ପାଇଁ 'ଉର୍ଣ୍ଣାବାସ ପହରଣ', ଗ୍ରୀଷ୍ମତାପରୁ ରକ୍ଷା ପାଇଁ ଜଳକ୍ରୀଡ଼ା, ଚନ୍ଦନଯାତ୍ରା, ସ୍ନାନପୂର୍ଣ୍ଣିମାରେ ସ୍ନାନଯାତ୍ରା, ପରେ ପରେ ଅତ୍ୟଧିକ ସ୍ନାନ ହେତୁ ଶାରୀରିକ ଅସୁସ୍ଥତା , ରୋଗ ଶଯ୍ୟାରୁ ଉଠି ନବଯୌବନ ମୂର୍ତ୍ତିମନ୍ତ ନିର୍ମଳ ତନୁରେ ଜଗନ୍ନାଥଙ୍କର ଆଷାଢ଼ ମାସରେ ରଥଯାତ୍ରା, ଏ ସମସ୍ତ ସମାଜର ଏକ ନିର୍ଦ୍ଦିଷ୍ଟ ନିୟମ ବା ସାମାଜିକ ଚଳଣି । ଜଗନ୍ନାଥଙ୍କର ଏହି ସବୁ ସଂସ୍କୃତି ମାନବୀ ସଂସ୍କୃତି । ଜଗନ୍ନାଥ ସାଂସ୍କୃତିକ ପ୍ରଭୁ ହୋଇଥିବାରୁ ଯୁଗ ଯୁଗର ପ୍ରଭାବକୁ ଧରି ରଖିଛନ୍ତି ।

ପ୍ରକୃତରେ ଦେଖିବାକୁ ଗଲେ ଯେଉଁ ସାମ୍ୟ ମୈତ୍ରୀ, ଭ୍ରାତୃତ୍ୱ ଉପରେ ମାନବୀୟ, ସଂସ୍କୃତିର ଅସ୍ତିତ୍ୱ ନିର୍ଭର କରେ, ଯାହା ପାଇଁ ଆଜି ବିଶ୍ୱ ସମାଜ ସର୍ବସ୍ୱ ବିନିମୟରେ ପ୍ରାଣପାତ କରିବାକୁ ସୁଦ୍ଧା କୁଣ୍ଠିତ ନୁହେଁ ଏବଂ ଯାହାର କଲ୍ୟାଣକାରିତା ସମ୍ବନ୍ଧରେ ସେ ଉଦାତ୍ତ କଣ୍ଠରେ ଜୟଗାନ କରି ଆସୁଛି, ସେସବୁର ପ୍ରତୀକ ଜଗନ୍ନାଥ । ଜଗନ୍ନାଥଙ୍କ ଉପାସନାରେ ଯେଉଁ ଆଚାର ବିଚାର ବିଦ୍ୟମାନ, ତାହା କେବଳ ଓଡ଼ିଆ ସଂସ୍କୃତି କିମ୍ବା ଭାରତୀୟ ସଂସ୍କୃତି ନୁହେଁ ବିଶ୍ୱ ସଂସ୍କୃତି । ସେହି ସଂସ୍କୃତିର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ଜଗନ୍ନାଥ ଅଦ୍ୱିତୀୟ ସାଂସ୍କୃତିକ ଦେବତା ରୂପେ ପରିଚିତ । ମ

ପ୍ରାଧ୍ୟାପକ, ରସାୟନ ବିଜ୍ଞାନ ବିଭାଗ
କରଞ୍ଜିଆ ମହାବିଦ୍ୟାଳୟ, ମୟୂରଭଞ୍ଜ

# ଅବତାର ବାଦ

☆ ଶ୍ରୀଯୁକ୍ତ ଦିଗମ୍ବର ମହାନ୍ତି

ଉକ୍ତିଟିର ଅର୍ଥ 'ତେଣୁ ମୁଁ ନିଜକୁ ସୃଷ୍ଟି କରିଥାଏ' । ଭଗବାନ ନିଜର ରୂପକୁ ନିଜେ ରଚନା କରିଥାନ୍ତି । ଅର୍ଥାତ୍ ସେ (ଭଗବାନ) ସାକାର ରୂପରେ ଲୋକମାନଙ୍କ ସମ୍ମୁଖରେ ପ୍ରକାଶିତ ହୋଇଥାନ୍ତି । ଭଗବାନ ଭଗବତ୍ ଗୀତାର ଚତୁର୍ଥ ଅଧ୍ୟାୟର ୭ମ ଶ୍ଳୋକରେ ଅର୍ଜୁନଙ୍କୁ କହିଛନ୍ତି -

ଯଦା ଯଦା ହିଁ ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମନଂ ସୃଜାମ୍ୟହମ୍ ।

ଯେତେବେଳେ ଯେତେବେଳେ ଧର୍ମର କ୍ଷୟ ଏବଂ ଅଧର୍ମର ବୃଦ୍ଧି ହୋଇଥାଏ ସେତେବେଳେ ଭଗବାନ ନିଜର ସାକାର ରୂପକୁ ରଚନା କରି ଲୋକମାନଙ୍କ ସମ୍ମୁଖରେ ପ୍ରକଟ ହୋଇଥାନ୍ତି । ଏପରି ଅନୁମାନ କରାଯାଇପାରେ ଯେ, ଋଷି କଳ୍ପ, ଧାର୍ମିକ, ଈଶ୍ୱରପ୍ରେମୀ, ସଦାଚାରୀ ପୁରୁଷ ତଥା ନିରପରାଧି ବଳହୀନ ପ୍ରାଣୀମାନଙ୍କ ଉପରେ ଦୁରାଚାରୀ ଏବଂ ବଳବାନର ଅତ୍ୟାଚାର ବଢିଗଲେ ଭଗବାନ ଅବତାର ଗ୍ରହଣ କରନ୍ତି । ସତ୍ୟଯୁଗର ହିରଣ୍ୟକଶିପୁର ଶାସନରେ ଯେତେବେଳେ ଦୁର୍ଗୁଣ ଏବଂ ଦୁରାଚାର ବୃଦ୍ଧି ହେଲା, ନିରପରାଧି ଲୋକେ କଷ୍ଟ ପାଇଲେ ଓ ଧ୍ୟାନ, ତପ, ପୂଜା, ପାଠ, ଯଜ୍ଞ, ଦାନାଦି, ଶୁଭକର୍ମ ଉପାସନା ବନ୍ଦ କରି ଦିଆଗଲା ଓ ଦେବତାମାନଙ୍କୁ ସେମାନଙ୍କ ଅଧିକାରରୁ ବାହାର କରି ଦିଆଗଲା ଏବଂ ପ୍ରହଲ୍ଲାଦ ପରି ଭକ୍ତକୁ ବିନା ଅପରାଧରେ ନାନା ପ୍ରକାର କଷ୍ଟ ଦିଆଗଲା ସେତେବେଳେ ଭଗବାନ ନୃସିଂହରୂପ ଧାରଣ କରି ପହଲ୍ଲାଦକୁ ଉଦ୍ଧାର କରି ଧର୍ମର ସ୍ଥାପନା କରିଥିଲେ ।

ଏଥିରୁ ସାଧାରଣ ମନୁଷ୍ୟମନରେ ବିଶ୍ୱାସ ହୁଏ ଯେ, ଭଗବାନ ଦୁଇଟି କାରଣରୁ ଅବତାର ଗ୍ରହଣ କରିଥାନ୍ତି । ଯଥା ଦୁଷ୍ଟମାନଙ୍କର ବିନାଶ ଓ ସାଧୁମାନଙ୍କର ପରିତ୍ରାଣ । ଶ୍ରୀମଦ୍ ଭଗବତ୍ ଗୀତାର ଚତୁର୍ଥ ଅଧ୍ୟାୟ ଅଷ୍ଟମ ଶ୍ଳୋକରେ କହିଛନ୍ତି -

ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍ ।
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।

ଭଗବାନ ସାଧୁମାନଙ୍କର ପରିତ୍ରାଣ, ଦୁଷ୍କୃତମାନଙ୍କର ବିନାଶ ଓ ଧର୍ମସଂସ୍ଥାପନ

ପାଇଁ ଯୁଗେ ଯୁଗେ ଜନ୍ମ ନେଇଥାନ୍ତି । ସାଧୁ ଅର୍ଥାତ୍ ଯିଏ ଅହିଂସା, ସତ୍ୟ, ଆସ୍ତେୟ, ବ୍ରହ୍ମଚର୍ଯ୍ୟାଦି ସମସ୍ତ ବ୍ରତ ସହିତ ଧର୍ମ ତଥା ଯଜ୍ଞ, ଦାନ, ତପ ଏବଂ ଅଧ୍ୟାପନ, ପ୍ରଜାପାଳନ ଆଦି ପୂର୍ବକ ଅନ୍ୟର ହିତ ସାଧନ କରିଥାଏ । ସେ ମଧ୍ୟ ଶ୍ରଦ୍ଧା ଏବଂ ପ୍ରେମ ପୂର୍ବକ ଭଗବାନଙ୍କ ନାମ, ରୂପ, ଗୁଣ, ପ୍ରଭାବ, ଲୀଳାଦିର ଶ୍ରବଣ, କୀର୍ତ୍ତନ ଓ ସ୍ମରଣ କରୁଥିବା ଭକ୍ତ । ସେହିପରି ଦୁଷ୍କୃତାନ୍ ଅର୍ଥାତ୍ ଯେଉଁମାନେ ନିରପରାଧ, ସଦାଚାରୀ ଏବଂ ଭଗବାନଙ୍କ ଭକ୍ତ ଉପରେ ଅତ୍ୟାଚର କରିଥା'ନ୍ତି ଓ ମିଛ, କପଟ, ଚୋରୀ, ବ୍ୟଭିଚାର ଆଦି ଦୁର୍ଗୁଣ ଏବଂ ଦୁରାଚାରର ଭଣ୍ଡାର ଅଟନ୍ତି । ସେ ନାନା ପ୍ରକାର ଅନ୍ୟାୟ କରି ଧନ ସଂଗ୍ରହ କରନ୍ତି ଓ ବେଦ, ଭଗବାନଙ୍କୁ ବିରୋଧ କରନ୍ତି । ଧର୍ମ ସଂସ୍ଥାପନ ଅର୍ଥାତ୍ ଶାସ୍ତ୍ରାନୁକୂଳ ଆଚରଣ ଦ୍ୱାରା ଅନ୍ତଃକରଣରେ ବେଦ, ଶାସ୍ତ୍ର, ମହାପୁରୁଷ ଓ ଭଗବାନଙ୍କ ଉପରେ ଶ୍ରଦ୍ଧା ରଖି ସଦ୍‌ଗୁଣ ଏବଂ ସଦାଚାରରେ ଲୋକମାନଙ୍କର ବିଶ୍ୱାସ ଖୁବ୍ ଭଲ ଭାବରେ ଧାରଣ କରିବା ହିଁ ଅଟେ । ଗୀତାର ଏହି ଶ୍ଳୋକଟି ଉଲ୍ଲେଖ ଉତ୍ପନ୍ନ କରିଥାଏ ଯେ ଭଗବାନ ପ୍ରାୟତଃ ଉପରୋକ୍ତ ତିନିଗୋଟି କାରଣରୁ ଅବତାର ଗ୍ରହଣ କରିଥାନ୍ତି ମାତ୍ର ଏହା ଠିକ୍ ନୁହେଁ । ଭଗବାନ ମଧ୍ୟ ଗୋଟିଏ ଦୁଇଟି ଉଦ୍ଦେଶ୍ୟ ପୂରଣ ପାଇଁ ଜନ୍ମ ନେଇ ପାରନ୍ତି ।

ଏଠାରେ ସ୍ୱତଃ ପ୍ରଶ୍ନ ଉଠିପାରେ ଭଗବାନ ସର୍ବଶକ୍ତିମାନ । ସେ ଅବତାର ନ ନେଇ ମଧ୍ୟ ସବୁ କାମ କରିପାରିବେ । ତେବେ ତାଙ୍କ ପାଇଁ ଅବତାରର ଆବଶ୍ୟକତା ବା କ'ଣ ପାଇଁ ? ଏହି କଥା ଅବଶ୍ୟ ଠିକ୍ ଯେ, ଭଗବାନ ବିନା ଅବତାରରେ ସହଜରେ ସବୁ କିଛି କରିପାରିବେ ଏବଂ ସେ କରିଥା'ନ୍ତି ମଧ୍ୟ । କିନ୍ତୁ ଲୋକମାନଙ୍କ ଉପରେ ଦୟା କରି ନିଜର ଦର୍ଶନ, ସ୍ପର୍ଶ ଏବଂ ଭାଷଣ ଆଦି ଦ୍ୱାରା ସହଜରେ ଲୋକମାନଙ୍କୁ ଉଦ୍ଧାର କରିବାକୁ ଓ ନିଜର ପ୍ରେମୀ ଭକ୍ତମାନଙ୍କୁ ଲୀଳାଦିର ଆସ୍ୱାଦନ କରାଇବାକୁ ସାକାର ରୂପ ନେଇ ପ୍ରକାଶିତ ହୋଇଥା'ନ୍ତି । ତାଙ୍କର ଗୁଣ, ପ୍ରଭାବ, ନାମ ଓ ମହାତ୍ମ୍ୟ ଆଦି ଦିବ୍ୟକର୍ମର ଶ୍ରବଣ, କୀର୍ତ୍ତନ ଓ ସ୍ମରଣ କରି ଲୋକମାନେ ସହଜରେ ସଂସାର ସମୁଦ୍ରରୁ ପାର ହୋଇ ପାରନ୍ତି । ସେଥିପାଇଁ ଭଗବାନ ନିଜର ଦିବ୍ୟ ଜନ୍ମ ବିଷୟକ ବର୍ଣ୍ଣନା କରି ଭଗବଦ୍ ଗୀତାର ୪ର୍ଥ ଅଧ୍ୟାୟ ନବମ ଶ୍ଳୋକରେ କହିଛନ୍ତି -

ଜନ୍ମ କର୍ମ ଚ ମେ ଦିବ୍ୟମେବଂ ଯୋ ବେତ୍ତି ତତ୍ତ୍ୱତଃ
ତ୍ୟକ୍ତ୍ୱା ଦେହଂ ପୁନର୍ଜନ୍ମ ନୈତି ମାମେତି ସୋଽର୍ଜୁନଃ ।

ଭଗବାନ ବାସ୍ତବିକ ଜନ୍ମ ଏବଂ ମୃତ୍ୟୁ ଠାରୁ ବହୁତ ଦୂରରେ ଥାଆନ୍ତି । ତାଙ୍କର ଜନ୍ମ ଜୀବମାନଙ୍କ ପରି ହୋଇ ନଥାଏ । ସେ ନିଜର ଭକ୍ତଙ୍କ ଉପରେ ଅନୁଗ୍ରହ କରି ଦିବ୍ୟ ଲୀଳାଗୁଡ଼ିକ ଦ୍ୱାରା ଜୀବମାନଙ୍କର ମନକୁ ଆକର୍ଷିତ କରିଥା'ନ୍ତି ।ତାଙ୍କର ଜନ୍ମ ନିର୍ଦ୍ଦୋଷ ଏବଂ ଅଲୌକିକ ଅଟେ । ଜଗତର କଲ୍ୟାଣ ପାଇଁ ଭଗବାନ ଏହି ପ୍ରକାର ମନୁଷ୍ୟାଦି ରୂପରେ ଲୋକଙ୍କ ସମ୍ମୁଖରେ ପ୍ରକାଶ ହୋଇଥା'ନ୍ତି । ତାଙ୍କର ଶରୀର ପ୍ରାକୃତିକ ଉପାଦାନ ବିଶେଷ ନୁହେଁ । ତାହା ଦିବ୍ୟ, ଚିନ୍ମୟ, ଶୁଦ୍ଧ ଏବଂ ଅଲୌକିକ । ପ୍ରଭୁଙ୍କର ଜନ୍ମରେ ଗୁଣ ଏବଂ କର୍ମର ସଂସ୍କାରର ହୋଇ ନଥାଏ । ସେ ମାୟାର ବଶ ହୋଇ ଜନ୍ମ ହୁଅନ୍ତି ନାହିଁ । ସେ ନିତ୍ୟ ପ୍ରକୃତିରେ ଅଧିଷ୍ଠିତ ହୋଇ ଯୋଗଶକ୍ତି ବଳରେ ମନୁଷ୍ୟାଦି ରୂପରେ କେବଳ ପ୍ରକଟ ହୋଇଥା'ନ୍ତି । ମଣିଷ ଏହି ସାକାର ରୂପରେ ପ୍ରକଟ ହୋଇଥିବା ଭଗବାନଙ୍କୁ ସାଧାରଣ ମନୁଷ୍ୟ ନ ଭାବି ସେ ଯେ ସର୍ବଶକ୍ତିମାନ, ସର୍ବେଶ୍ୱର, ଅନ୍ତର୍ଯ୍ୟାମୀ, ସଚ୍ଚିଦାନନ୍ଦ. ପୂର୍ଣ୍ଣବ୍ରହ୍ମ ବୋଲି ଜାଣିବା ଭଗବାନଙ୍କର ଜନ୍ମର ତତ୍ତ୍ୱ ଅଟେ । ଯିଏ ଭଗବାନଙ୍କର ଜନ୍ମର ଦିବ୍ୟତାକୁ ତତ୍ତ୍ୱର ସହିତ ବୁଝିଯାଏ ତାଙ୍କ ପାଇଁ ଭଗବାନ ଭକ୍ତର ଗୋଟିଏ କ୍ଷଣର ବିୟୋଗ ଅସହ୍ୟ ହୋଇପଡ଼େ । ସେ ମୃତ୍ୟୁ ପରେ ପୁର୍ନଜନ୍ମ ଲାଭ କରେ ନାହିଁ । ସେ କେବଳ ମୋ ପାଖକୁ ଚାଲିଆସେ ଏବଂ ମୋ ଠାରେ ଲୀନ ହୋଇଯାଏ ।

ତେଣୁ ଏଥିରୁ ସ୍ପଷ୍ଟ ପ୍ରମାଣ ମିଳିଥାଏ ଯେ, ଜୀବମାନଙ୍କର କଲ୍ୟାଣ ନିମିତ୍ତ ନିରାକାର ପରମାତ୍ମା ସାକାର ରୂପ ଧାରଣ କରି ଏହି ଧରାଧାମରେ ଅବତାର ନେଇଥା'ନ୍ତି । 'ଅବତରତି ଇତି ଅବତାର' । ଅର୍ଥାତ୍ ଉପରୁ ତଳକୁ ଓହ୍ଲାଇଥାନ୍ତି । ଈଶ୍ୱରଙ୍କର ଏହି ସାକାର ରୂପ ଜିଜ୍ଞାସୁ ଭକ୍ତମାନଙ୍କର ଉତ୍କଟ ଅଭିଳାଷର ମୂର୍ତ୍ତି ସ୍ୱରୂପ ଅଟେ । ଭକ୍ତ ମାନଙ୍କର ଭକ୍ତିର ମଧୁରତା ଘନୀଭୂତ ହେବା ପରେ ଈଶ୍ୱରଙ୍କ ଅବତାର ସଂଘଟିତ ହୋଇଥାଏ । ଯୁଗଯୁଗାନ୍ତରୁ ଅଭିଳାଷୀ ଭକ୍ତଙ୍କର ଇଚ୍ଛାକୁ ପୂରଣ କରିବା ଏବଂ ସେମାନଙ୍କୁ ଶାନ୍ତି ପ୍ରଦାନ କରିବା ଅବତାରର ଅନ୍ୟ ଏକ ପ୍ରମୁଖ କାର୍ଯ୍ୟ । ଯଦିଓ ଗାଈ ମୁଖ୍ୟ ରୂପରେ ବାଛୁରୀ ପାଇଁ ହିଁ କ୍ଷୀର ପ୍ରଦାନ କରିଥାଏ ତଥାପି ଆମ୍ଭେମାନେ ଦେଖୁ ଈଶ୍ୱରଙ୍କର ଏହି ମଣିଷ ସେଥିରୁ ଲାଭାନ୍ୱିତ ହୋଇଥାଏ । ତେଣୁ ଭଗବାନଙ୍କର ମୁଖ୍ୟ କାର୍ଯ୍ୟ ଭକ୍ତର ଉଦ୍ଧାର ଏବଂ ସଂରକ୍ଷଣ ପାଇଁ ତଥାପି ସମସ୍ତଙ୍କ ହିତ ପାଇଁ ଅନ୍ୟ କାର୍ଯ୍ୟ ମଧ୍ୟ କରିଥା'ନ୍ତି ।

ପୁନରାୟ ପ୍ରଭୁ କେବଳ ପୃଥିବୀ ପୃଷ୍ଠରେ ବା ମାନବ ଦେହ ଧାରଣ କରି ଅବତାର ନେବାରେ କିଛି ନିଶ୍ଚିତ ନିୟମ ନାହିଁ । ସେ ସେ ଦୃଷ୍ଟିରୁ ପୂର୍ଣ୍ଣ ସ୍ୱତନ୍ତ୍ର ।

ପ୍ରଭୁ ଯେକୌଣସି ସମୟରେ ଯେକୌଣସି ରୂପରେ ପ୍ରକଟ ହୋଇ ପାରନ୍ତି । ତାଙ୍କର ସ୍ଥାନ ଯେକୌଣସି ଠାରେ ହୋଇପାରେ ଏବଂ ରୂପ ମଧ୍ୟ ଯାହା କିଛି ବି ହୋଇପାରେ ମାତ୍ର ଅବତାରର ମନ୍ତବ୍ୟ ଭକ୍ତର ଉତ୍କଟ ଅଭିଳାଷକୁ ପରିପୂର୍ଣ୍ଣ କରି କଲ୍ୟାଣ ପ୍ରଦାନ କରିବା ହୋଇଥାଏ । ଈଶ୍ୱର ଦେଶ ଏବଂ କାଳର ସୀମାଠାରୁ ଉର୍ଦ୍ଧ୍ୱରେ ଅଟନ୍ତି ।

ପରମାତ୍ମା ପରିପୂର୍ଣ୍ଣ ସେ ସଚ୍ଚିଦାନନ୍ଦ ରୂପାୟ ଅଟନ୍ତି । ଅବତାରୀ ବା ଅବତାର ଉଭୟଙ୍କର ସ୍ୱଭାବ ପୂର୍ଣ୍ଣ ହିଁ ଅଟେ । ଈଶାବାସ୍ୟୋପନିଷଦରେ କୁହାଯାଇଛି -

ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।

ଅର୍ଥାତ୍ ପରମବ୍ରହ୍ମ ପୂର୍ଣ୍ଣ ଅଟନ୍ତି ଏବଂ ଏଠାରେ କାର୍ଯ୍ୟବ୍ରହ୍ମ ମଧ୍ୟ ପୂର୍ଣ୍ଣ ଅଟନ୍ତି । କାରଣ ପୂର୍ଣ୍ଣରୁ ପୂର୍ଣ୍ଣର ଉତ୍ପତ୍ତି ହୋଇଥାଏ । ପ୍ରଳୟ କାଳରେ ପୂର୍ଣ୍ଣକାର୍ଯ୍ୟ ବ୍ରହ୍ମ ପୂର୍ଣ୍ଣତ୍ୱକୁ ନେଇ ନିଜ ସ୍ୱରୂପରେ ଲୀନ କରି ପୂର୍ଣ୍ଣ ପରମବ୍ରହ୍ମ ହିଁ ଅବଶେଷ ରହିଥାଏ । ଭାଗବତ ଶାସ୍ତ୍ରରେ ଭଗବାନ ସ୍ୱରୂପ ଗୁଣାତୀତ ବୋଲି ବର୍ଣ୍ଣନା କରାଯାଇଛି ଯାହାକି ପୂର୍ଣ୍ଣର ପରିଚାୟକ । କୌଣସି ଗୁଣସୂଚୀ ପୂର୍ଣ୍ଣତଃ ତାଙ୍କର ବର୍ଣ୍ଣନା କରିପାରେ ନାହିଁ । ଈଶ୍ୱରଙ୍କ ଦୃଷ୍ଟିରେ ସମସ୍ତ ଜୀବ, ପଶୁ, ପକ୍ଷୀ ଏବଂ ଦେବତା ସମାନ ଅଟନ୍ତି । ସେମାନେ କେବଳ ମାତ୍ର ପାତ୍ର ଏବଂ ଉପାଧିରେ ଅନ୍ତର ହୋଇଥାନ୍ତି କିନ୍ତୁ ଆତ୍ମା ବିଶେଷରେ ନୁହେଁ । ଉଦାହରଣ ସ୍ୱରୂପ ବିଦ୍ୟୁତ୍‌ଶକ୍ତି । ବିଦ୍ୟୁତ୍‌ଶକ୍ତି ଯେପରି ଅନେକ ପ୍ରକାରରେ ପ୍ରକାଶିତ ହୋଇଥାଏ ଯଦିଓ ଏହାର ଶକ୍ତି ସମାନ ଅଟେ ଏବଂ ଏ ବିଷୟରେ ଭିନ୍ନତାର ବିଚାର କରିବା ଅଜ୍ଞାନର ସନ୍ତକ ମାତ୍ର । ସେହିଭଳି ଏକ ମାତ୍ର ଈଶ୍ୱର ହିଁ ପ୍ରତ୍ୟେକ ଶରୀରର ଜୀବନ ଶକ୍ତି ଅଟନ୍ତି । ବୁଦ୍ଧିମାନ ବ୍ୟକ୍ତି ପାତ୍ର ଓ ଉପାଧି ବିଶେଷରେ ଗୋଟିଏ ମାତ୍ର ଶକ୍ତିର ଅନୁଭବ କରେ । ଈଶ୍ୱର ପ୍ରକୃତରେ ଗୋଟିଏ ମାତ୍ର ଚେତନା । ଯିଏ ସବୁଥିରେ ସମାନ ରୂପରେ ବ୍ୟାପ୍ତ ଥାଆନ୍ତି ଏବଂ ସମସ୍ତଙ୍କୁ ସ୍ପନ୍ଦିତ କରନ୍ତି । ଯିଏ ଶରୀରକୁ ଆତ୍ମା ବୋଲି ମାନି ନେଇଥାଏ ତାକୁ କର୍ମଫଳ ବାନ୍ଧିଥାଏ ମାତ୍ର ଯେଉଁମାନେ ନିଜକୁ ନିଜର ଅମର ଆତ୍ମା ବୋଲି ଚିହ୍ନିଥାନ୍ତି ସେମାନଙ୍କୁ କର୍ମଫଳର ବନ୍ଧନ ବାନ୍ଧିପାରେ ନାହିଁ ।

ପୁରାଣ ଏବଂ ଦର୍ଶନ ଶାସ୍ତ୍ରମାନଙ୍କରେ ଭଗବାନଙ୍କର ଅନେକ ଗୁଡ଼ିଏ ଅବତାରର ବ୍ୟାଖ୍ୟାନ କରାଯାଇଛି ମାତ୍ର ପ୍ରକୃତ ପକ୍ଷେ ଈଶ୍ୱରଙ୍କର ଅବତାର ଗ୍ରହଣର କୌଣସି ଅନ୍ତ ନାହିଁ । ବେଳେ ବେଳେ ସେ ନିଜ ମହିମାର କିଛି ଅଂଶ ନେଇ ଅବତାର ନେଉଥିବା ସ୍ଥଳେ କେତେବେଳେ ଅବା ସମ୍ପୂର୍ଣ୍ଣ ମହିମା ସହିତ ଅବତାର

ନେଇଥା'ନ୍ତି । ସମୟ ସମୟରେ ମଧ କିଛି ବିଶିଷ୍ଟ କାର୍ଯ୍ୟ ପାଇଁ, ସମୟ ସମୟରେ ଦେଶ ଓ କାଳ ପାଇଁ ଓ କେତେବେଳେ ସମ୍ପୂର୍ଣ୍ଣ ମହିମା ସହିତ ଅବତାର ଗ୍ରହଣ କରିଥା'ନ୍ତି । ଭଗବାନଙ୍କର କେବଳ ଏହି ଅବତାର ଗ୍ରହଣ ନୁହେଁ ଅଧିକନ୍ତୁ ଏହାର କାରଣ ମଧ ଅନନ୍ତ ଅଟେ । କୌଣସି ସୀମା ମଧରେ ନିର୍ଦ୍ଦିଷ୍ଟ ଭଗବାନଙ୍କ ଅବତାରର କାରଣ କରାଯାଇନପାରେ । ରାମଚରିତ ଗ୍ରନ୍ଥରେ ତୁଳସୀ ଦାସ କହନ୍ତି-

"ହରି ଅବତାର ହେତୁ ତୋହି ହୋଇ

ଇଦମ ତ୍ଥଂ କହି ଜାତ ନ ସୋଇ ॥"

ଅର୍ଥାତ୍ ଭଗବାନଙ୍କର ଅବତାର ସମ୍ବନ୍ଧୀୟ ପ୍ରୟୋଜନ ଯେ କେବଳ ଏତିକିମାତ୍ର ବୋଲି କହିବା ଏକ ଅନଧିକାର ଚେଷ୍ଟା । ବାସ୍ତବିକ ଏ କଥା ସତ୍ୟ ଯେ, ଅବତାରର ପ୍ରକୃତ ମର୍ମ ଅବତାରୀ ହିଁ ଜାଣିଥା'ନ୍ତି । ଅନ୍ୟ ଯେଉଁମାନେ ଅବତାର ବିଷୟକ କାରଣମାନ ଯାହାକିଛି ବି କହନ୍ତି ତାହା ସବୁ କେବଳ ସେହିମାନଙ୍କର ରୁଚିକର କାରଣ ଅଟେ । ତେଣୁ ପ୍ରକୃତ ପକ୍ଷରେ ଏତିକିମାତ୍ର ଅବତାରର କାରଣ କୁହାଯାଇପାରେ ଯେ, ଏହା ଈଶ୍ୱରଙ୍କର ଅଯାଚିତ କରୁଣା । ପ୍ରଭୁଙ୍କର କେବେହେଲେ କାହା ସହିତ ରାଗ ବା ଦ୍ୱେଷ ନଥାଏ ଏବଂ ସେ ନିଜ ଭିତରେ ନିଜେ ହିଁ ତୃପ୍ତ ଅଟନ୍ତି । ସେ ଆତ୍ମାରାମ ଓ ପୂର୍ଣ୍ଣକାମ ହିଁ ଅଟନ୍ତି । ତାଙ୍କର ନିଜର କୌଣସି ସ୍ୱାର୍ଥ ନଥାଏ । ସବୁକାର୍ଯ୍ୟ ତାଙ୍କର ପରାର୍ଥ ପାଇଁ କରିଥା'ନ୍ତି । ତାଙ୍କର ଅକାରଣ କରୁଣା ସ୍ୱଭାବ ଜଗତ ବିଖ୍ୟାତ । ମୁଖ୍ୟତଃ ଏହି ସ୍ୱଭାବ କାରଣରୁ ତାଙ୍କର ଅବତାର ଆଦି ହୋଇଥାଏ । ତାଙ୍କର ନିରାକାର ବ୍ରହ୍ମ ସମ୍ବନ୍ଧୀୟ ଅଭେଦ ଭକ୍ତି ଲକ୍ଷଜଗତରେ ଜଣେ ପାଇବା ଦୁର୍ଲ୍ଲଭ । ତେଣୁ ଶଙ୍କରାଚାର୍ଯ୍ୟ ଜଣାଇଛନ୍ତି-

ଶୁଦ୍ଧୟତିହି ନାନ୍ତରାତ୍ମା କୃଷ୍ଣ ପଦାମ୍ଭୋଜ ଭକ୍ତିମ୍ ।

ଅର୍ଥାତ୍ ସଗୁଣ ସାକାର ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ଭକ୍ତି ଜାଗ୍ରତ ହେଲେ ଅନ୍ତଃକରଣ ଶୁଦ୍ଧ ହୁଏ ଓ ସେ ପରମାତ୍ମାଙ୍କ ବିଷୟକ ଜ୍ଞାନର ଅଧିକାରୀ ହୋଇପାରେ । ଭକ୍ତି ବ୍ୟତିରେକେ ଅଧିକାରୀ ହେବା ଅସମ୍ଭବ । ସେଥିପାଇଁ ଭଗବାନ ସବୁବେଳେ ନିଜର ଅକାରଣ କରୁଣା ସ୍ୱଭାବ ପାଇଁ ଅବତାର ଗ୍ରହଣ କରିବା ଦ୍ୱାରା ତାଙ୍କର ସଗୁଣ ସାକାର ସ୍ୱରୂପ ବିଷୟକ ଅନନ୍ତ ନାମ, ଅନନ୍ତ ଗୁଣ ଓ ଅନନ୍ତ ଲୀଳା ଆଦିର ପ୍ରକାଶ ଘଟିଥାଏ । ଆମ୍ଭେମାନେ ସେହି ସଗୁଣ ସାକାର ଅନନ୍ତ ନାମ, ଅନନ୍ତ ଗୁଣ ଓ ଅନନ୍ତ ଲୀଳାଦିର ଅବଲମ୍ବନ କରି ଯୁଗଯୁଗ ଧରି ଜନ୍ମ ହୋଇ ଆସୁଥିବା ପଙ୍କିଳ ଜୀବାତ୍ମାକୁ ଭବସାଗରରୁ ପାର କରିପାରୁ । ମହାମୁନି ବାଲ୍ମୀକି ବହୁ ପତିତ କାର୍ଯ୍ୟ କରିଥିଲେ

ମାତ୍ର 'ରାମ' ଶବ୍ଦ ଉଚ୍ଚାରଣ କରିନପାରି ତାହାର ଓଲଟା 'ମରା', 'ମରା' ଉଚ୍ଚାରଣ କରି ମଧ୍ୟ ବ୍ରହ୍ମର୍ଷି ହୋଇପାରିଥିଲେ। ସେହିପରି ମନୁଷ୍ୟ ସଗୁଣ ସାକାର ସଂସାରରେ ନିଜର କାର୍ଯ୍ୟନିର୍ବାହ ମଧ୍ୟରେ ସ୍ୱଭାବକୁ ପ୍ରଭୁଙ୍କୁ ଅର୍ପଣ କରି ପରମତତ୍ତ୍ୱ ସନ୍ଧାନ ପାଇପାରିବ। ଆହୁରି ମଧ୍ୟ ସଗୁଣ ସାକାର ଭଗବାନ ଜୀବମାନଙ୍କର ରୁଚିକୁ ମଧ୍ୟ ପ୍ରଭାବିତ କରି ସେମାନଙ୍କର କଲ୍ୟାଣ କରିଥା'ନ୍ତି।

'ଶ୍ରୀମଦ୍ ଭାଗବତ'ରେ ମାତା କୁନ୍ତୀ କୃଷ୍ଣ ହସ୍ତିନାପୁରରୁ ବିଦାୟ ବେଳାରେ ପ୍ରଥମ ସ୍କନ୍ଧ ଅଷ୍ଟମ ଅଧ୍ୟାୟରେ କହିଛନ୍ତି।

ନମସ୍ୟେ ପୁରୁଷଂ ତ୍ୱାଦ୍ୟମୀଶ୍ୱରଂ ପ୍ରକୃତେ ପରମ୍<br>
ଅଲକ୍ଷଂ ସର୍ବଭୂତାନାଂ ଅନ୍ତର୍ବହିରବସ୍ଥିତମ୍ ॥

ଅର୍ଥାତ୍ ହେ କୃଷ୍ଣ ତୁମେ ସାକ୍ଷାତରେ ଈଶ୍ୱର। ତୁମେ ହିଁ ଆଦି ପୁରୁ । ତୁମେ ହିଁ ବିଶ୍ୱ ପ୍ରକୃତିର ନିୟନ୍ତା। ତୁମେ ସମସ୍ତ ଜୀବମାନଙ୍କକର ଅନ୍ତରରେ ଏବଂ ବାହାରେ ଅବସ୍ଥିତ। ସାଧାରଣ ବୁଦ୍ଧିରେ ତୁମକୁ ଜାଣିହୁଏ ନାହିଁ। ସେହି ଭାଗବତରେ ପୁଣି ମଧ୍ୟ କୁନ୍ତୀ କହିଛନ୍ତି- ତଥା ପରମହଂସାନାଂ ମୁନୀନାମମଳାତ୍ମନାମ

ଭକ୍ତି ଯୋଗ ବିଧାନାର୍ଥଂ କଥଂ ପଶ୍ୟେମ ହି ସ୍ତ୍ରୀୟଃ ॥

ଅର୍ଥାତ୍ ହେ ପ୍ରଭୁ (କୃଷ୍ଣ) ଆପଣ ପରମହଂସ ମୁନିମାନଙ୍କୁ ଭକ୍ତି ବିଷୟକ ଜ୍ଞାନ ଶିକ୍ଷା ଦେବାପାଇଁ ଅବତୀର୍ଣ୍ଣ ହୋଇଛନ୍ତି। ଆମ୍ଭେମାନେ ସାମାନ୍ୟ ନାରୀ ଏହା ବା କିପରି ବୁଝିପାରିବୁ? ଏଥିରୁ ସ୍ପଷ୍ଟ ହୁଏ ଯେ ଭଗବାନଙ୍କ ଅବତାର ବ୍ରହ୍ମାନନ୍ଦୀ ପରମହଂସ ମାନଙ୍କୁ ପ୍ରେମରସାପ୍ଲୁତ କରିବା ହିଁ ଉଦ୍ଦେଶ୍ୟ ଅଟେ। ଭଗବାନ ଅବତାର ଗ୍ରହଣ କରି ଜୀବମାନଙ୍କୁ ନିଜର କରୁଣାଦିର ପରିଚୟ ପରିଚୟ ପ୍ରଦାନ କରିଛନ୍ତି। ଏହି କରୁଣାଦି ବିଷୟ ଶୁଣି ଜୀବମାନଙ୍କର ମନରେ ସାହସ ଜାଗ୍ରତ ହୁଏ ଏବଂ ଜୀବ ଅନନ୍ୟ ବିଶ୍ୱାସଯୁକ୍ତ ହୋଇ ଭଗଗବାନଙ୍କ ଆଡ଼କୁ ଆକୃଷ୍ଟ ହୁଏ। ଯେଉଁ ଜୀବନ ଅନଧିକାରୀ ଓ ମାୟାଯୁକ୍ତ ସେମାନଙ୍କୁ ଈଶ୍ୱର ଠିକ୍ ଦେଖାଯାଆନ୍ତି ନାହିଁ। ପ୍ରଭୁଙ୍କର ଅବତାର ଦିବ୍ୟ ଏବଂ ନିତ୍ୟ ଅଟେ। ଭଗବାନଙ୍କ ସମସ୍ତ ଅବତାର ପରିପୂର୍ଣ୍ଣ। ତାଙ୍କର କେଉଁ ଅବତାର ଛୋଟ ବା ବଡ଼ ନୁହେଁ। ଭଗବାନ ଖଣ୍ଡ ଖଣ୍ଡ ହୁଅନ୍ତି ନାହିଁ। ସେ ସବୁଆଡ଼େ ଏବଂ ସବୁ ସ୍ଥିତିରେ ଏକ ରସ ପରିପୂର୍ଣ୍ଣ ରହନ୍ତି। ସେଥିପାଇଁ ବେଦବ୍ୟାସ କହନ୍ତି-

ସର୍ବେ ପୂର୍ଣ୍ଣାଃ ଶାଶ୍ୱତାଶ୍ଚ ଦେହାସ୍ତସ୍ୟ ପରାତ୍ମନଃ।

ବେଳେବେଳେ ଭକ୍ତମାନଙ୍କ ମନରେ ଯୁକ୍ତି ଆସେ ଯେ ଆମର ଅବତାରବାଲା

ଇଷ୍ଟଦେବ ବଡ଼ ଏବଂ ଅନ୍ୟ ସବୁ ଛୋଟ। ଏହା ଏକ ବଡ଼ ଅପରାଧ। ଏପରି ବିଚାର ଭୁଲରେ ମଧ କରିବା ଉଚିତ ନୁହେଁ। ଭଗବାନ ସବୁବେଳେ ଭଗବାନ। ଯଦି ସେ ଖଣ୍ଡ ବିଖଣ୍ଡିତ ହେବାକୁ ଲାଗନ୍ତି ତେବେ ସେ ଭଗବାନ ହୋଇ ରହିବେ ନାହିଁ। ସାଧାରଣତଃ ଅବତାର ଚକ୍ରରେ ଭଗବାନଙ୍କର ଯେତେ ଅବତାର ଅଛି ସେମାନଙ୍କ ମଧ୍ୟରୁ ରାମ ଓ କୃଷ୍ଣ ଅବତାରକୁ ବଡ଼ ବୋଲି କହନ୍ତି ଯାହା ବାସ୍ତବିକ ଠିକ୍ ନୁହେଁ। ଏ ବିଷୟରେ ଏତିକି କୁହାଯାଇପାରେ ଯେ ଅନ୍ୟ ଅବତାର ମାନଙ୍କ ଅପେକ୍ଷା ଏହି ଦୁଇ ଅବତାରରେ ଲୀଳା ଗୁଡ଼ିକ ଅଧିକ ହୋଇଛି। ଏହି ଲୀଳା ଗୁଡ଼ିକ ଶ୍ରବଣ ଓ ମନନ ଦ୍ୱାରା ସାଧକର ମନ ଶୀଘ୍ର ଈଶ୍ୱରଙ୍କ ଆଡ଼କୁ ଅଗ୍ରସର ହୁଏ। କେବଳ ମାତ୍ର ମନ ଆକର୍ଷଣ କରିବାରେ ଏହି ଦୁଇ ଅବତାରଙ୍କୁ ଗୁରୁତ୍ୱ ଦିଆଯାଇପାରେ କିନ୍ତୁ ଅବତାରରେ କୌଣସି ଐଶ୍ୱର୍ଯ୍ୟ ଶକ୍ତିର କମ୍ ବେଶୀ ନାହିଁ। ଅମ୍ଭେମାନେ ଅବୁଝା ପିଲାକିଆମିରେ ଅବତାରମାନଙ୍କରେ ଭିନ୍ନତା ଦେଖିଥାଉ। ଏଥିରେ କେବଳ ଅକୃତ୍ରିମତାର ଭେଦ ରହିଅଛି। ଅବତାରକୁ ପ୍ରେମ କଲେ ସମସ୍ତଙ୍କଠାରେ ଅନନ୍ତ ଶକ୍ତି, ଅନନ୍ତ ଗୁଣ ଓ ଦିବ୍ୟତା ଆଦି ସବୁ ସମାନ ରୂପରେ ବିଦ୍ୟମାନ ହୋଇଥାଏ। ବେଳେ ବେଳେ ଦଶ ଅବତାର ବା ଚବିଶ ଅବତାର ପୁରାଣ ମାନଙ୍କରେ ବତାଯାଇଥିଲେ ମଧ ପଚିଶ ସ୍ୱରୂପ ପସନ୍ଦ ହୋଇଥାଏ। ଏଥିରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ। କାରଣ ଆମେ ଯେଉଁ ସ୍ୱରୂପ ଭଗବାନଙ୍କର ଦେଖିବାକୁ ଚାହୁଁ ବା ଯେଉଁ ସ୍ୱରୂପ ଭଗବାନ କେବେ ହୋଇନଥିଲେ ସେପରି ହେଉ ତାହା ଭଗବାନଙ୍କ ପକ୍ଷରେ ସେମାନଙ୍କ ପାଇଁ ସମ୍ଭବ ମଧ ହୋଇଥାଏ। କାରଣ ଏହି ବ୍ରହ୍ମାଣ୍ଡ ଅନନ୍ତ ଅଟେ ଏବଂ ଭଗବାନଙ୍କର ପ୍ରତିକ୍ଷଣ ଅନନ୍ତ ଅନନ୍ତ ଅବତାର ସଂଘଟିତ ହେଉଅଛି।

ଅବତାରାଦି ଅସଂଖ୍ୟାୟା ହରେଃ ସତ୍ତ୍ୱନିଧେ ଦ୍ୱିଜାଃ। ଭଗବାନ ଅସଂଖ୍ୟ ହୋଇ ସାରିଛନ୍ତି ଏବଂ ତାଙ୍କୁ କୌଣସି ରୂପ ସାଧାରଣ କରିବାକୁ ବିଶେଷ କିଛି ପରିଶ୍ରମ କରିବାକୁ ପଡ଼େ ନାହିଁ। ସେ ନିଜ ଇଚ୍ଛାରେ ରଙ୍ଗ ରଙ୍ଗାଇ ପାରନ୍ତି। ଈଶ୍ୱର ବଡ଼ ଦୟାଳୁ ହୋଇଥିବାରୁ ସେ ଜୀବ ପାଇଁ କୌଣସି କଠୋର ନିୟମ ବା ପ୍ରତିବନ୍ଧକ ରଖି ନାହାଁନ୍ତି। ତାଙ୍କୁ ଅନନ୍ତ ନାମ ରୂପାୟ ବା ଅନନ୍ତ ରୂପଧାରୀ ମଧ କୁହାଯାଏ। ଆମ୍ଭେମାନେ ଆମର ଅବୁଝାପଣରେ ତାଙ୍କୁ କୌଣସି ସୀମାରେ ବାନ୍ଧିଥାଉ। ତାଙ୍କ ନାମର ସୀମା ସୀମିତ ନୁହେଁ। ଯେକୌଣସି ବ୍ୟକ୍ତି ଯେକୌଣସି ଭାଷାଭାଷୀ ଓ ଯେକୌଣସି ଦେଶର ହୋଇଥିଲେ ହେଁ ପ୍ରଭୁଙ୍କର ନାମ ନିଜ ଇଚ୍ଛାନୁସାରେ ରଖାଯାଇପାରେ। ଏଥିରେ କେଉଁ ନାମ ବଡ଼ ବା କେଉଁ ନାମ ଛୋଟ ନୁହେଁ।

ଭଗବାନ ଶ୍ରୀକୃଷ୍ଣଙ୍କୁ ସଖାମାନେ କହ୍ନେୟା, ଯଶୋଦା କାନୁଆଁ ଓ ଗୋପୀମାନେ ଚୋର ଜାର ଇତ୍ୟାଦି ନାମରେ ଡାକୁଥିଲେ ମଧ୍ୟ ସେ ଏହି ସବୁ ଡାକ ଶୁଣିବାକୁ ବ୍ୟାକୁଳ ହୋଇ ରହୁଥିଲେ। ତେଣୁ ନାମ ମାତ୍ରରେ ସନ୍ଦେହ ଉପୁଜିବା ଉଚିତ ନୁହେଁ କାରଣ ଯେ କୌଣସି ନାମରେ ନାମୀ ମଧ୍ୟ ମିଳିଯିବେ। ଭଗବାନ ବଡ଼ ଦୟାଳୁ। ସେ ଭକ୍ତ ବତ୍ସଳ। ସେ ଭକ୍ତର ପ୍ରେମରେ ବିଭୋର ହୋଇ ସେମାନଙ୍କର ଭର୍ତ୍ସନାରେ ପରମାନନ୍ଦିତ ହେଉଥିଲେ ।

ରାମ ଏବଂ କୃଷ୍ଣଙ୍କର ଯେତେ ସବୁ ଲୀଳା ଆମ୍ଭେମାନେ ଗ୍ରନ୍ଥମାନଙ୍କରେ ଦେଖୁ ତାହା ସମୁଦ୍ରର ଗଭୀର ଜଳରେ ଗୋଟିଏ ବିନ୍ଦୁ ସହ ସମାନ ନୁହେଁ । ଭଗବାନଙ୍କର ଲୀଳା ଅନାଦିକାଳରୁ ପ୍ରତିକ୍ଷଣ ହୋଇ ଆସିଛି ଏବଂ ପ୍ରତ୍ୟେକ ଦିନ ନୂତନ ନୂତନ ଲୀଳା ମଧ୍ୟ ହେଉଛି । ଭଗବାନଙ୍କୁ କୌଣସି ନିର୍ଦ୍ଦିଷ୍ଟ ସୀମାରେ ବାନ୍ଧିବା ଆମ୍ଭମାନଙ୍କର ସଂପୂର୍ଣ୍ଣ ପିଲାଳିଆମି । ସେଥିପାଇଁ କୁହାଯାଇଛି -

'ହରି ଅନନ୍ତ ଏବଂ ହରିକଥା ଅନନ୍ତ ଅଟେ । ରାମାୟଣ ଗ୍ରନ୍ଥରେ ଏହାର ମହାତ୍ମ୍ୟ ବିଷୟରେ କହନ୍ତି -

ଚରିତଂ ରଘୁନାଥସ୍ୟ ଶତ କୋଟି ପ୍ରବିସ୍ତରମ୍
ଏକୈକଂ ଅକ୍ଷରଂ ପୁଂସା ମହାପତକ ନାଶନଂ ।।

ଅର୍ଥାତ୍ ରଘୁନାଥ ଚରିତ ଅଥବା ରାମଙ୍କ ଚରିତ ଶତକୋଟି ଗୁଣରେ ବିସ୍ତାରିତ ହୋଇପାରିଥାଏ । ଏହି ଚରିତର ଗୋଟିଏ ଗୋଟିଏ ଅକ୍ଷର ମଧ୍ୟ ମହାପାପକୁ ମଣିଷକୁ ଉଦ୍ଧାର କରିପାରେ । ମୋଟ ଉପରେ କହିବାକୁ ଗଲେ ଭକ୍ତର ଭକ୍ତିଭାବରେ ଭଗବାନ ସବୁକିଛି କରିପାରନ୍ତି । ପୁନରାୟ ପ୍ରଭୁଙ୍କ ନିକଟରେ ସବୁଗୁଣ ସବୁନାମ ବିଦ୍ୟମାନ ଥିବାରୁ ଆମକୁ ଯେଉଁଗୁଣ ଓ ଯେଉଁ ରୂପ ଭଲ ଲାଗେ ତାହା ଗ୍ରହଣ କଲେ କିଛି ଅସୁବିଧା ହେବ ନାହିଁ । ଭଗବାନ ସବୁ ନାମ, ସବୁ ଗୁଣ ଓ ସବୁରୂପକୁ ସ୍ୱୀକାର କରି ନିଅନ୍ତି ।

ସେହିପରି ପ୍ରଭୁଙ୍କର ଧାମ ମଧ୍ୟ ପରସ୍ପର ଗୋଟିଏ ଅଟେ । ଆମକୁ ଯେଉଁ ଧାମ ପ୍ରିୟ ଲାଗୁଛି ସେହି ଧାମକୁ ଆମେ ସ୍ୱୀକାର କରିନେବା ଉଚିତ । ସେଥିରେ କୌଣସି ଅସୁବିଧା ବା ବ୍ୟତିକ୍ରମ ନ ଥାଏ । ଏପରିକି ଭଗବାନ ନର୍କରେ ମଧ୍ୟ ମିଳି ପାରିବେ । ସମସ୍ତ ସ୍ଥାନ ହିଁ ତାଙ୍କର ଧାମ ହୋଇ ପାରିବ । ଭଗବାନଙ୍କର ରୂପ ଧ୍ୟାନ କରି ନାମ, ଗୁଣ, ଲୀଳା, ଧାମ ଇତ୍ୟାଦିରେ ଦିବ୍ୟ ଚିନ୍ମୟ ଭାବ ରଖିବା ଆବଶ୍ୟକ ।

ରାମାୟଣ ମତରେ ପ୍ରଭୁ ବ୍ୟାପକ ଓ ସର୍ବତ୍ର ସମାନ-

'ପ୍ରେମ ତେ ପ୍ରକଟ ହୋହିଂ ମୈ ଜାନା ।'

ଅର୍ଥାତ ଭଗବାନ ସମାନ ରୂପରେ ସର୍ବତ୍ର ରହନ୍ତି । ତେଣୁ ତାଙ୍କର ଭକ୍ତମାନେ ମଧ୍ୟ ବୁଝିବା ଦରକାର ଯେ, ସବୁ ଶ୍ରେଣୀର ଓ ସବୁ ପ୍ରକାରର ଭକ୍ତ ଏକ ଅଟନ୍ତି । ବ୍ୟକ୍ତି ବିଶେଷ ଯେଉଁ ଭକ୍ତି ଦ୍ୱାରା ପ୍ରଭୁ ବିଷୟକ ଲାଭାନ୍ୱିତ ହୁଏ ତାହାକୁ ନିଜର କରିନେବା ଉଚିତ । ଏହା ସହିତ ଅନ୍ୟମାନଙ୍କ ଠାରେ ମନ୍ଦ ଭାବନା ରଖିବା ଉଚିତ ନୁହେଁ । ଭଗବାନଙ୍କର ଅନନ୍ତ ଧାମ, ଅନନ୍ତନାମ, ଅନନ୍ତ ରୂପ, ଅନନ୍ତ ଗୁଣ, ଅନନ୍ତ ଲୀଳା ଏବଂ ଅନନ୍ତ ଜନ ଅଛନ୍ତି ଯାହା ପରସ୍ପର ସବୁ ଏକ ହିଁ ଅଟେ । ଏମାନଙ୍କ ମଧ୍ୟରୁ କୌଣସି ଗୋଟିଏ ମାତ୍ରର ଅବଲମ୍ବନରେ ମଧ୍ୟ ଈଶ୍ୱରପ୍ରାପ୍ତି ହୋଇପାରିବ । ପ୍ରଭୁ ବିଷୟକ ଅଧିକ ଚର୍ଚ୍ଚା ଓ ଅଧିକ ବୁଦ୍ଧି ଖର୍ଚ୍ଚ ନ କରି ଯେଉଁଠାରେ ଆଗ୍ରହ ସେଠାରେ ଆଶ୍ରୟ ବ୍ୟକ୍ତି ଅନ୍ୟ ଗୁଣାଦିର ନିନ୍ଦା କରିବା ସାଂଘାତିକ ଭୁଲ ଅଟେ । ଭାଗବତରେ କୁହାଯାଇଛି-

ମନ୍ୟେ ତ୍ୱାଂ କାଳମଶାନମ-ନାଦିନିଧନଂ ବିଭୁମ୍ ।

ସମଂ ଚରନ୍ତଂ ସର୍ବତ୍ର ଭୁତାନାଂ ଯନ୍ମିଥଃ କଳିଃ ।।

ଅର୍ଥାତ୍ ମୁଁ ଆପଣଙ୍କୁ ଅନାଦି, ଅନନ୍ତ, ସର୍ବବ୍ୟାପୀ ଏବଂ ସ୍ୱୟଂକାଳ ସ୍ୱରୂପ ପରମେଶ୍ୱର ବୋଲି ମନେ କରେ । ଆପଣ ମଧ୍ୟ ସମସ୍ତଙ୍କ ମଧ୍ୟରେ ବିବାଦ ଏବଂ ବୈଷମ୍ୟ ସୃଷ୍ଟି କରିଥାନ୍ତି ।

ବିଭିନ୍ନ ଶାସ୍ତ୍ର ବା ପୁରାଣାଦିରେ ଏହି ଭଗବାନଙ୍କ ଅବତାର ମାନଙ୍କୁ ଅଂଶାବତାର, କଳାବତାର, ଆବେଗବତାର, ପୂର୍ଣ୍ଣାବତାର ଇତ୍ୟାଦି ଭାବରେ ବର୍ଣ୍ଣନା ବା ଚର୍ଚ୍ଚିତ ହେବାର ଦେଖାଯାଇଥାଏ ମାତ୍ର ଏଭଳି ବିଚାର ଠିକ୍ ନୁହେଁ । କାରଣ ଭଗବାନ କେବଳ ସେହି ଅବତାରରେ ଯେତିକି ଶକ୍ତିର ପ୍ରୟୋଜନ ହୋଇଥାଏ ସେତିକି ପ୍ରକାଶ କରିଥାନ୍ତି ।

ଯେପରିକି କୌଣସି ବ୍ୟକ୍ତି ଛୋଟପିଲାମାନଙ୍କ ସହିତ କୋମଳ ଭାଷାରେ ସ୍ତ୍ରୀ ସହିତ ପ୍ରେମ ଭାଷାରେ ଅନୁଜୀବିମାନଙ୍କ ସହିତ କୌଶଳପୂର୍ଣ୍ଣ ଭାଷାରେ, ଗୁରୁଜନଙ୍କ ସହିତ ଅନୁନୟ ଭାଷାରେ ଉତ୍ତର ଦେଇଥା'ନ୍ତି ସେହିପରି ଭଗବାନଙ୍କର ଅବତାର ମାନଙ୍କରେ ଶକ୍ତି ପ୍ରକାଶର ଅବସ୍ଥା ସଂଘଟିତ ହୋଇଥାଏ । ପ୍ରଭୁଙ୍କର ଅବତାର ଶାଶ୍ୱତ, ଦିବ୍ୟ ଓ ପୂର୍ଣ୍ଣ ଅଟେ । ନିରାକାର ପରମାତ୍ମାଙ୍କର ଅବତାର ଗ୍ରହଣ ଜୀବର କଲ୍ୟାଣ ପାଇଁ ଉଦ୍ଦିଷ୍ଟ । ତେଣୁ ପ୍ରତ୍ୟେକ ମାନବ ସେଥିରୁ ଲାଭାନ୍ୱିତ ହେବା ଆବଶ୍ୟକ । ମଣିଷ ଯଦି ମଣିଷ ପରି ବ୍ୟବହାର କରେ ତାହା ମଣିଷ ପାଇଁ ଶ୍ରେଷ୍ଠ

କର୍ତ୍ତବ୍ୟ ଏବଂ ସେ ଯଦି ମାଧବଙ୍କ ପରି କାର୍ଯ୍ୟ କରେ ତେବେ ସେ ପ୍ରଶଂସନୀୟ ହୋଇପଡ଼େ । ପରନ୍ତୁ ପଶୁ ବା ଦୈତ୍ୟ ପରି ବ୍ୟବହାର କଲେ ଏହା ତାହାର ପତନର ପରିଚାୟକ । ତେଣୁ ଅତି ସାବଧାନତାର ସହିତ ଭଗବାନଙ୍କର ଏହି ନାଟକକୁ ବୁଝିବା ଅତ୍ୟନ୍ତ ପ୍ରୟୋଜନୀୟ । ଶ୍ରୀମଦ୍ ଭାଗବତ ମହାନ୍ ଗ୍ରନ୍ଥରେ କୁନ୍ତୀ କହନ୍ତି -

ମାୟା ଜବନିକାଚ୍ଛନ୍ନମଜ୍ଞାଽଧୋକ୍ଷଜମ୍ ବ୍ୟୟମ୍ ।
ନ ଲକ୍ଷ୍ୟସେ ମୂଢ଼ଦୃଶା ନାଟ୍ୟଧରୋ ଯଥା ।।

ହେ କୃଷ୍ଣ ନାଟକରେ ଅଭିନୟ କରୁଥିବା ବ୍ୟକ୍ତିର ପ୍ରକୃତ ସ୍ୱରୂପ ଯେପରି ଜଣାପଡ଼େ ନାହିଁ ସେହିପରି ମାୟା ଜବନିକାରେ ଆଚ୍ଛାଦିତ ଆପଣଙ୍କର ଇନ୍ଦ୍ରିୟତୀତ ଅବ୍ୟୟ ସ୍ୱରୂପକୁ ମୁଁ ମୋର ଅଜ୍ଞତା ଦୃଷ୍ଟିରୁ ବୁଝିପାରୁନାହିଁ । ହେ ବିଶ୍ୱାତ୍ମା ! ଏହା ଆଶ୍ଚର୍ଯ୍ୟର ବିଷୟ ଯେ ଆପଣ ଜନ୍ମ ଏବଂ କର୍ମରୁ ରହିତ ହେଲେ ମଧ୍ୟ ବିଭିନ୍ନ ପ୍ରାଣୀଙ୍କ ରୂପରେ ଯଥା - ଜଳଚର, ବନ୍ୟ ଓ ନର ରୂପରେ ଏହି ସଂସାରରେ ଲୀଳା ରଚନା କରିବାକୁ ଅବତୀର୍ଣ୍ଣ ହୋଇଛନ୍ତି ।

ଜନ୍ମ କର୍ମ ଚ ବିଶ୍ୱାତ୍ମନ୍ ଜସ୍ୟାକର୍ତ୍ତୁରାତ୍ମନଃ
ତିର୍ଯ୍ୟଡ଼୍‌ନୃଷିଷୁ ଯାଦିଃସୁ ତଦତ୍ୟନ୍ତ ବିଡ଼ମ୍ବନମ୍ ।। ❊

ବରିଷ୍ଠ ଅଧ୍ୟାପକ, ସଂସ୍କୃତ ବିଭାଗ
ନୀଳମଣି ମହାବିଦ୍ୟାଳୟରୁପ୍ସା, ବାଲେଶ୍ୱର ।

# 'ଦାଣ୍ଡନାଟ'ରେ ଆଧ୍ୟାତ୍ମିକତା ଓ ସମାଜ ଜୀବନ ଉପରେ ଏହାର ପ୍ରଭାବ

☆ ଡକ୍ଟର ବଂଶୀଧର ଚୌଧୁରୀ

**ଅଲୌକିକ ଦୈବୀ ବିଶ୍ୱାସ ଓ ଦଣ୍ଡନାଟ** : - ଦଣ୍ଡନାଟ ଏକ ପ୍ରାଚୀନ ଲୋକ ନାଟକ । ଏହାର ଆଦି ସୃଷ୍ଟି ସମ୍ପର୍କରେ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ମିଳେ ନାହିଁ । କେବଳ ଲୋକ ବିଶ୍ୱାସ, ପୌରାଣିକ ଓ ଐତିହାସିକ ଆଖ୍ୟାନକୁ ଭିତ୍ତିକରି ବିଭିନ୍ନ ସମାଲୋଚକ, ସେମାନଙ୍କର ଅନୁମାନ ସାପେକ୍ଷ ମତ ପ୍ରଦାନ କରିଛନ୍ତି । କେଉଁ ଆଦିମ କାଳରୁ ଲୋକ ଏବଂ ଅଲୌକିକ ଦୈବୀ ଶକ୍ତି ଉପରେ ବିଶ୍ୱାସ ସ୍ଥାପନ କରି ଆସିଛି । ଫଳରେ ତା' ଭିତରେ ସୃଷ୍ଟି ହୋଇଛି ଧର୍ମ-ଭାବ । ଧର୍ମ ଦ୍ୱାରା ସ୍ୱର୍ଗୀୟ ଜୀବନକୁ ସାତ୍ତ୍ୱିକ ଭାବେ ଉପଭୋଗ କରିବା ପାଇଁ ପ୍ରାଚୀନ ଭାରତୀୟ ମୁନି ଋଷିମାନେ ଲୋକ ସମାଜକୁ ମଧ୍ୟ ଆହ୍ୱାନ ଜଣାଇଥିଲେ । ଧର୍ମ ସାର୍ବଜନୀନ । ଏହା ସାମ୍ପ୍ରଦାୟିକ ହୀନମନ୍ୟତାର ଊର୍ଦ୍ଧ୍ୱରେ । ସ୍ୱାମୀ ବିବେକାନନ୍ଦଙ୍କ ମତରେ 'ହିନ୍ଦୁ ଧର୍ମ କୌଣସି ଗୋଟିଏ ମାତ୍ର ମତବାଦ ଉପରେ ବିଶ୍ୱାସ ରଖେ ନାହିଁ । ଏହା ମଧ୍ୟ ତା'ର ଆଦର୍ଶ ନୁହେଁ । ଧର୍ମ ହେଉଛି ଜୀବନ ସ୍ରୋତର ଗଭୀର ଉପଲବ୍ଧି ଏବଂ ବଞ୍ଚି ରହିବା ସହିତ ବିକାଶ ଲାଭ କରିବାର ପ୍ରେରଣା- ଉତ୍ସ ।' ଏହି ବଞ୍ଚିବା ଓ ବଢିବା ବିଷୟଗତ ନ ହୋଇ ଚେତନାଗତ ହେବା ବିଧେୟ । ଧର୍ମର ସଂଜ୍ଞା ନିରୂପଣ କରିବାକୁ ଯାଇ ଦାର୍ଶନିକ କ୍ରାଡ଼ିସନ୍ କହିଛନ୍ତି "As the life is the gift of heaven, it is religion to enjoy it" (ଜୀବନ ହେଉଛି ସ୍ୱର୍ଗୀୟ ଦାନ, ଧର୍ମ ଦ୍ୱାରା ଏହି ସ୍ୱର୍ଗୀୟ ଜୀବନକୁ ଉପଭୋଗ କରାଯାଏ)

ଏ ସମ୍ପର୍କରେ ଜର୍ମାନ ଦାର୍ଶନିକ ମେଟ୍ୟାଇଲି କହନ୍ତି - "No Religion is ever thought of rejecting the indisputable law of endless movement of eternal becoming" (କୌଣସି ଧର୍ମ ଜୀବନର ଶାଶ୍ୱତ ଅସ୍ତି ଓ ବୃଦ୍ଧିର ଅବ୍ୟାହତ ଗତିବିଧିକୁ ପରିତ୍ୟାଗ କରିପାରେ ନାହିଁ ।) ମନୁଷ୍ୟ ଜୀବନର ଶ୍ରେଷ୍ଠ ସାଧନା ହେଉଛି ପ୍ରବୃତ୍ତିର ଦାସତ୍ୱ ଠାରୁ ମୁକ୍ତ ହୋଇ ଏକ ନୀତିଗତ ଓ ଆଦର୍ଶଗତ ଜୀବନ ଯାତ୍ରା ପଥରେ ଅଗ୍ରସର ହେବା । ଏଥିପାଇଁ ଯୁଗେ ଯୁଗେ ମଣିଷ ସ୍ୱାଭାବିକ ଭାବେ ଈଶ୍ୱରଙ୍କର ଆବଶ୍ୟକତାକୁ ସ୍ୱୀକାର କରି ଆସିଛି । ଏ ସମ୍ପର୍କରେ

ବୈଜ୍ଞାନିକ ଡ଼କ୍ଟର ଏଲେକସିସ୍ କରେଲ୍ଙ୍କ ମତଟି ପ୍ରଣିଧାନଯୋଗ୍ୟ । ସେ କହନ୍ତି "We need a God Who hears us, helps us. loves I responds us" ଅପର ପକ୍ଷରେ ମାନବ ପ୍ରିୟ ଈଶ୍ୱର ମଧ୍ୟ ଭଗବତ୍ ଗୀତାରେ କହିଛନ୍ତି -

"ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂ ତ୍ୱାଂ ସର୍ବ ପାପେଭ୍ୟୋ
ମୋକ୍ଷୟିସ୍ୟାମି ମା ଶ୍ୱଚଃ ।"

ଏଠାରେ ଈଶ୍ୱର ଓ ମଣିଷ ପରସ୍ପର ସାପେକ୍ଷ । ଏହାକୁ ପ୍ରମାଣିତ କରିବାକୁ ଯାଇ ସ୍ୱାମୀ ବିବେକାନନ୍ଦଙ୍କର ବକ୍ତବ୍ୟକୁ ଉଲ୍ଲେଖ କରାଯାଇପାରେ । ସେ କହନ୍ତି - "Religion is the menifestation of the Divinity already in man" (ମଣିଷ ଭିତରେ ସ୍ୱତଃ ଆଧାତ୍ମିକ ଶକ୍ତି ବିଦ୍ୟମାନ । ଧର୍ମ ଦ୍ୱାରା ଏହି ଶକ୍ତି ବିକାଶ ଲାଭ କରେ) । ସମଗ୍ର ମାନବ ସମାଜକୁ ଏକ କଲ୍ୟାଣକର ଶାନ୍ତି ପ୍ରଦାୟକ ମୁକ୍ତିର ପଥ ଦେଖାଇବା ପାଇଁ ବିଭିନ୍ନ ନୀତି ଶାସ୍ତ୍ର ଓ ସାହିତ୍ୟ ସୃଷ୍ଟି ହୋଇଛି ଓ ବିଭିନ୍ନ ଅନୁଷ୍ଠାନ ଉତ୍ସବ ଆଦି ପାଳନ କରିବାର ପରମ୍ପରା ଚଳି ଆସିଛି । ଏହି ନ୍ୟାୟରେ କେଉଁ ଆଦିମ କାଳରୁ ଭାରତୀୟ ଲୋକବିଶ୍ୱାସ ଅଛି ଦେବ ଦେବ ମହାଦେବ ଶିବ ଜଗତର ଅଶେଷ କଲ୍ୟାଣ ସାଧନ କରିପାରିବେ କିମ୍ୱା ଜଗତକୁ ଧ୍ୱଂସ କରି ଦେଇ ପାରିବେ । ତେଣୁ ପ୍ରାଚୀନ କାଳରୁ ଶିବ ପାର୍ବତୀଙ୍କ ପ୍ରତୀକ ଭାବେ ଲିଙ୍ଗ ପୂଜା ପ୍ରଚଳିତ । ମହେଞ୍ଜୋଦାରୋ ଓ ହରପ୍ପାର ପ୍ରତ୍ନତାତ୍ତ୍ୱିକ ଖନନରୁ ମିଳୁଥିବା ପ୍ରମାଣ ଏଥିପାଇଁ ଯଥେଷ୍ଟ । ଶିବଙ୍କୁ କୈଳାସପତି ଓ ତାଙ୍କର ପତ୍ନୀଙ୍କୁ ପାର୍ବତୀ ବୋଲି କୁହାଯାଉଥିବାରୁ ଅନୁମାନ କରାଯାଇପାରେ ଶିବ-ପାର୍ବତୀଙ୍କର ଆରାଧନା ପାର୍ବତ୍ୟାଞ୍ଚଳରୁ ଆରମ୍ଭ ହୋଇଥିଲା । କାଳକ୍ରମେ ଏହା ବହୁ ପ୍ରସାରିତ ହୋଇ ଶୈବଧର୍ମର ଖ୍ୟାତି ଅର୍ଜନ କରି ପ୍ରଜା ଠାରୁ ରାଜା ପର୍ଯ୍ୟନ୍ତ ସମସ୍ତଙ୍କ ଦ୍ୱାରା ଆଦୃତ ହୋଇଛି । ଏମିତିକି ବ୍ରହ୍ମା ଓ ବିଷ୍ଣୁ ମଧ୍ୟ ଶିବଙ୍କୁ ପ୍ରାର୍ଥନା କରିଥିବାର ସୂଚନା ବିଭିନ୍ନ ଶାସ୍ତ୍ରରୁ ମିଳିଥାଏ । କେନ୍ଦୁଝର ନିକଟରୁ ମିଳିଥିବା ଭାରତର ସର୍ବପ୍ରାଚୀନ 'ଆସନ ପାଟ' ଅଭିଲେଖରେ ଖୋଦିତ ଶିବ ବିଗ୍ରହରୁ ପ୍ରମାଣିତ ହୁଏ ଯେ, ଉଭୟ ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କର ଉପାସ୍ୟ ଦେବତା ଥିଲେ ଶିବ ।

ସାର୍ ଜନ୍ ମାର୍ଶାଲ 'ମହେଞ୍ଜୋଦାରୋ ଏବଂ ସିନ୍ଧୁ ସଭ୍ୟତା' ପୁସ୍ତକରେ ଉଲ୍ଲେଖ କରିଛନ୍ତି - 'ସୈନ୍ଧବ ସଭ୍ୟତାର ଶିବ ଓ ଶକ୍ତି ପୂଜାର ପ୍ରଚଳନ ନ ଥିଲା ।

ଫାଦର ହେରାସ୍ ମଧ୍ୟ କହନ୍ତି ସୈନ୍ଧବ ସଭ୍ୟତାର ଶିବ ଓ ଶକ୍ତି ପୂଜାର ପ୍ରଚଳନ ନଥିଲା ଓ ସେହି ସଭ୍ୟତାର ଲିପିକୁ ଅନୁଧ୍ୟାନ କରି ସେ ଅନୁମାନ କରନ୍ତି ଯେ ଦ୍ରାବିଡ଼ ମାନେ ଉକ୍ତ ସଭ୍ୟତାର ସ୍ରଷ୍ଟା । ବୈଦିକ ଋଷିମାନେ ମଧ୍ୟ ରୁଦ୍ର ପୂଜା କରୁଥିଲେ । ଏହି ରୁଦ୍ର ହେଉଛନ୍ତି ଶିବ । ବୈଦିକ ପରବର୍ତ୍ତୀ କାଳରେ ଯେଉଁ ତ୍ରିମୂର୍ତ୍ତିର ପରିକଳ୍ପନା କରାଯାଇଛି ସେଥିରେ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର (ଶିବ) ଯଥାକ୍ରମେ ସୃଷ୍ଟିକର୍ତ୍ତା, ପାଳନ କର୍ତ୍ତା ଓ ମଙ୍ଗଳ କର୍ତ୍ତା (ପ୍ରଳୟ କର୍ତ୍ତା ନୁହଁନ୍ତି) । ଶୈବ ଧର୍ମରେ ଓ ସ୍ୱାଭାବିକ ଭାବେ ପ୍ରାଚୀନ ଲୋକ ବିଶ୍ୱାସରେ ଶିବ ଓ ପାର୍ବତୀ ହେଉଛନ୍ତି ଭଗବାନ ଓ ଭଗବତୀ, ବିଶ୍ୱ ଜନକ ଓ ବିଶ୍ୱ ଜନନୀ । ଲିଙ୍ଗ ପ୍ରତୀକରେ ପୁରୁଷ ଓ ପ୍ରକୃତିର ମିଳନ ହେଉଛି ଅପ୍ରାକୃତି । ପ୍ରକୃତିର ସତ୍ତ୍ୱ, ରଜ ଓ ତମ ଅର୍ଥାତ୍ ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତିକୁ ଅତିକ୍ରମ କରି ଚତୁର୍ଥ ତୂରୀୟ ଅବସ୍ଥାରେ ଶିବ ବିଦ୍ୟମାନ । ସେ ବିଶ୍ୱରୂପ ଓ ବିଶ୍ୱାଧିକ । ତାଙ୍କର ଅଷ୍ଟଗୁଣ ହେଉଛି ସ୍ୱାତନ୍ତ୍ର୍ୟ, ପବିତ୍ରତା, ଆତ୍ମଜ୍ଞାନ,ସର୍ବଜ୍ଞାନ, ନିର୍ମଳତା, ଅନୁଗ୍ରହ, ସର୍ବଶକ୍ତି ଓ ଆନନ୍ଦ । ଶିବ ପୂଜନ ମାଧ୍ୟମରେ ମାନବ ଏହି ଗୁଣ ଗୁଡ଼ିକୁ ନିଜ ଭିତରେ ବିକଶିତ କରିବା ପାଇଁ ଆଶୀର୍ବାଦ କାମନା କରିଥାଏ । ଆଧ୍ୟାତ୍ମିକ ଉପଲବ୍ଧି ପାଇଁ ଏହି ଗୁଡ଼ିକ ଅପରିହାର୍ଯ୍ୟ ବୋଲି ପଣ୍ଡିତ ଓ ସାଧକ ମାନଙ୍କର ମତ । ଜନୈକ ଶୈବଧର୍ମୀ ଆଚାର୍ଯ୍ୟ ମାଣିକ ବାଚକରଙ୍କ ମତରେ ଶିବ ଅଷ୍ଟମୂର୍ତ୍ତି ଭାବେ ପୃଥିବୀ , ଜଳ ,ବାୟୁ, ଅଗ୍ନି, ଆକାଶ, ସୂର୍ଯ୍ୟ, ଚନ୍ଦ୍ର ଓ ଚେତନଶୀଳ ମନୁଷ୍ୟର ରୂପରେ ସର୍ବବ୍ୟାପୀ ହୋଇ ରହିଥା'ନ୍ତି । ଏକ ଚେତନଶୀଳ ମାନବସମାଜ ଗଠନ ପ୍ରକ୍ରିୟା ବହୁ ପ୍ରାଚୀନ କାଳରୁ ଲୋକମାନଙ୍କ ଦ୍ୱାରା ଆରମ୍ଭ ହୋଇଥିବା କଥାକୁ ଅସ୍ୱୀକାର କରାଯାଇ ନ ପାରେ । ଭାରତରେ ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କର ବିଭିନ୍ନ ଉତ୍ସବ ଅନୁଷ୍ଠାନ ପାଳନର ପୃଷ୍ଠଭୂମିରେ ଆଧ୍ୟାତ୍ମିକ ବିଶ୍ୱାସ ବିଦ୍ୟମାନ । ଏହି ବିଶ୍ୱାସରେ ଜୀବ ଶିବଙ୍କର ଆନନ୍ଦ ପ୍ରାପ୍ତ ହୁଏ ।

ଏହା ପ୍ରାଚୀନ ସାଂଖ୍ୟ ମତବାଦର ସତ୍‌କାର୍ଯ୍ୟ ସହିତ ସାମ୍ୟ ରକ୍ଷା କରେ । ମାୟା ଅଚିତ୍ ହୋଇଥିବାରୁ ଶିବଙ୍କ ଚିତ୍ ଶକ୍ତି ସାହାଯ୍ୟରେ ମାୟା ପରିଚାଳିତ ହୋଇ 'ମା' ଅକ୍ଷୟ ଅର୍ଥରେ ଜଗତ ପ୍ରଳୟ ବେଳେ ମାୟାରେ ବିଲୀନ ହୁଏ ଓ 'ୟା' ଅକ୍ଷର ଅର୍ଥରେ ଜଗତ ସୃଷ୍ଟିରେ ମାୟାରୁ ଉତ୍ପନ୍ନ ହୁଏ । ଜୀବାତ୍ମାକୁ ନିର୍ମଳ ମୁକ୍ତି ପ୍ରଦାନ କରିବା ପାଇଁ ଶିବ ଜଗତର ଉତ୍ପତ୍ତି କରିଥାନ୍ତି ବୋଲି ଶୈବ ସିଦ୍ଧାନ୍ତ ମତ ଦିଏ । ଏଥିପାଇଁ ଜୀବାତ୍ମା ଶିବଙ୍କର ଅନୁଗ୍ରହ କାମନା କରିବା ଏକାନ୍ତ ଆବଶ୍ୟକ । ଯୋଗର ଆବଶ୍ୟକତା ଏହି ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ତେଣୁ କୁଣ୍ଡଳିନୀ

ଯୋଗରେ ଲିଙ୍ଗପୂଜା ବା ମୂର୍ତ୍ତିପୂଜା ନ ଥାଏ । ଶରୀରର ସୂକ୍ଷ୍ମ ଜଗତରେ ସ୍ଥୂଳ ଜଗତର ସମସ୍ତ ବିଭବ ବିଦ୍ୟମାନ । ଯୋଗୀ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରି ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧି ଆଜ୍ଞା, ସହସ୍ରା ଚକ୍ର ଇତ୍ୟାଦିକୁ ଅତିକ୍ରମ କରି ସାମାଧି ଲାଭ କରିଥାଏ । ନିମ୍ନଚକ୍ର ମୂଳାଧାରରେ ଶକ୍ତି ସୁପ୍ତ ନାଗ ସର୍ପ ପରି ଶୋଇ ରହିଥାଏ ଓ ଉଚ୍ଚତମ ଚକ୍ର ସହସ୍ରାରେ ଶିବ ରହିଥାନ୍ତି । କୁଣ୍ଡଳିନୀ ଯୋଗ ମାଧ୍ୟମରେ ଯୋଗୀ ଶକ୍ତି ଓ ଶିବଙ୍କର ମିଳନ ଘଟାଇ ସମାଧିରେ ଉପନୀତ ହୁଏ । ଏହିଠାରେ ହିଁ ଶିବଙ୍କର ସାତ୍ତ୍ୱିକ ଆନନ୍ଦ ଲାଭ କରେ ଯୋଗୀ । ପରିବର୍ତ୍ତନଶୀଳ ପ୍ରକୃତି ଓ ମୃତ୍ୟୁହୀନ ଜୀବାତ୍ମାକୁ ଯେଉଁ ଦେବତା ନିୟନ୍ତ୍ରଣରେ ରଖିଥାନ୍ତି ସେ ହେଉଛନ୍ତି ହର । ଶ୍ୱେତାଶ୍ୱତ ଉପନିଷଦରେ ସେଥିପାଇଁ (୧/୧୦) କୁହାଯାଇଛି -

"କ୍ଷରଂ ପ୍ରଧାନମ୍ ଅମୃତାକ୍ଷରଂ ହରଃ କ୍ଷରାତ୍ମାନାବୀଶତେ ଦେବଃ
ଏକଃ ତସ୍ୟାଭିଧାନାଦ୍ ଯୋଜନାତ୍ ତତ୍ତ୍ୱଭାବାଦ୍ ଭୂୟଶ୍ଚାନ୍ତେ ବିଶ୍ୱମାୟା ନିବୃତ୍ତିଃ ।"

ବେଦର ରୁଦ୍ର, ଶୈବଧର୍ମର ଶିବ ଓ ସାଂଖ୍ୟର ପୁରୁଷ ଏକ ଓ ଅଭିନ୍ନ । ସେ ହିଁ ଈଶ୍ୱର- ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା, ମଙ୍ଗଳକର୍ତ୍ତା (ମତାନ୍ତରେ ସଂହର୍ତ୍ତା) । ସେ ହିଁ ନିର୍ଗୁଣ ବ୍ରହ୍ମ - ସାର୍ବକାଳୀକ ଓ ସାର୍ବଜନୀନ । ସେ ହିଁ ପୁରୁଷ ଓ ପ୍ରକୃତି । ତାଙ୍କରି ମଙ୍ଗଳମୟ ଇଚ୍ଛାରେ ସେ ଏକରେ ଅନେକ ଓ ଅନେକରେ ଏକ ।

ଆନନ୍ଦ ଲହରୀରେ କୁହାଯାଇଛି -

"ଉଭାଭ୍ୟାମ୍ ଏତାଭ୍ୟାମ୍ ଉଭୟ ବିଧିମ୍ ଉଦ୍ଦିଶ୍ୟ ଦୟୟା
ସନାଥାଭ୍ୟାଂ ଜଜ୍ଞେ ଜନକ ଜନନୀ ମଜ୍ଜ ଗଦିଦମ୍ ।"

ଉଭୟ ପୁରୁଷ ଓ ପ୍ରକୃତି, ଶିବ ଓ ଶକ୍ତି, ବିଶ୍ୱ ଜନକ ଓ ବିଶ୍ୱ ଜନନୀଙ୍କ ମିଳନରେ ଏ ଜଗତ ଉତ୍ପନ୍ନ ହୋଇଛି ଏବଂ ସେମାନଙ୍କର ଦୟାରେ ସମସ୍ତ କାର୍ଯ୍ୟ ଚାଲିଛି ।

## ଦଣ୍ଡ ନାଟକର ଆରାଧ୍ୟ ଦେବାଦେବୀ :-

ଏହିଭଳି ତତ୍ତ୍ୱଗତ ଅବବୋଧରୁ ହେଉ କିମ୍ବା ସ୍ୱାଭାବିକ କମଳ ବିଶ୍ୱାସରୁ ହେଉ କେଉଁ ଅଜ୍ଞାତ କାଳରୁ ପ୍ରଚଳିତ ଦଣ୍ଡନାଟର ମୌଳିକ ଆରାଧ୍ୟ ଦେବାଦେବୀ ହେଉଛନ୍ତି ଶିବ ଏବଂ ପାର୍ବତୀ (ଶକ୍ତି) । 'ଦଣ୍ଡ' ହେଉଛି ଶିବ ଓ ଶକ୍ତିଙ୍କର ପ୍ରତୀକ । ଖ୍ରୀଷ୍ଟୀୟ ପ୍ରଥମ ଶତକ (ମତାନ୍ତରେ ଚତୁର୍ଥ ଶତକ)ରେ ମହାକବି କାଳିଦାସ ତାଙ୍କ

'ମାଳବିକାଗ୍ନିମିତ୍ର' ନାଟକରେ ପ୍ରସ୍ତାବନାରେ ରୁଦ୍ର ଓ ଉମାଙ୍କୁ ପ୍ରଥମ ନଟନଟୀ ବୋଲି ଉଲ୍ଲେଖ କରିଛନ୍ତି। ଭରତଙ୍କ 'ନାଟ୍ୟଶାସ୍ତ୍ର' ଅନୁଯାୟୀ ଶିବଙ୍କଠାରୁ 'ତାଣ୍ଡବନୃତ୍ୟ' ଓ ପାର୍ବତୀଙ୍କଠାରୁ 'ଲାସ୍ୟନୃତ୍ୟ' ଶିକ୍ଷା ମିଳିଛି। ତେଣୁ ଦଣ୍ଡନାଟରେ ଉଭୟ ଶିବ ଓ ପାର୍ବତୀଙ୍କର ବନ୍ଦନା ଗାନ କରାଯାଇଥାଏ। ଋକ୍ ବେଦ ଓ ଶୁକ୍ଳ ଯଜୁର୍ବେଦ ଇତ୍ୟାଦି ପ୍ରାଚୀନ ଗ୍ରନ୍ଥରେ ରୁଦ୍ର(ଶିବ)ଙ୍କର ସ୍ତୁତି ମନ୍ତ୍ର ଲିପିବଦ୍ଧ। ଦଣ୍ଡନାଟରେ ଶିବ ଓ ପାର୍ବତୀଙ୍କୁ ଆରାଧ୍ୟ ଦେବାଦେବୀ ଭାବେ ଗ୍ରହଣ କରାଯାଇଥିବାରୁ ଏହା ଏକ ପ୍ରାଚୀନ ଲୋକକଳାର ମର୍ଯ୍ୟାଦା ଦାବୀ କରେ। ପ୍ରାଚୀନ ଭାରତୀୟ ଶାସ୍ତ୍ର, ବେଦ, ଉପନିଷଦ, ରାମାୟଣ, ମହାଭାରତ, କାମସୂତ୍ର, ମହାଭାଷ୍ୟ ତଥା ବୌଦ୍ଧ ଓ ଜୈନ ଧର୍ମଗ୍ରନ୍ଥରୁ ଲୋକନାଟକରେ ଯେଉଁ ସୂଚନା ମିଳେ ଦଣ୍ଡନାଟକୁ ହୁଏତ ତାହାର ଅନ୍ତର୍ଭୁକ୍ତ କରାଯାଇପାରେ। ଖ୍ରୀ:ପୂ: ପ୍ରଥମ ଶତକରେ ଆଚାର୍ଯ୍ୟ ଭରତ ମଧ୍ୟ ନାଟକକୁ 'ଲୋକବୃତ୍ତାନୁକରଣମ୍' ଓ 'ଲୋକୋପଦେଶଜନନଂ' ଭାବେ ଗ୍ରହଣ କରିଛନ୍ତି ଯାହା ଦଣ୍ଡନାଟରେ ଦେଖିବାକୁ ମିଳେ। ଖ୍ରୀ:ପୂ: ଦ୍ୱିତୀୟ ଶତକ ବେଳକୁ ଓଡ଼ିଶାରେ ନାଟ୍ୟକଳାର ବିକାଶ ସାଧିତ ହୋଇଥିବାର ପ୍ରମାଣ ହେଉଛି ଖଣ୍ଡଗିରି ଓ ଉଦୟଗିରିର ଶିଳାଲେଖ। ନୃତ୍ୟ ଓ ବାଦ୍ୟରତ ନରନାରୀଙ୍କ ଚିତ୍ର ଏଥିରେ ଖୋଦିତ। ସେହିଭଳି ଖାରବେଳଙ୍କ ଅନୁଶାସନରୁ ଜଣାଯାଏ ଖାରବେଳ ତାଙ୍କ ରାଜ୍ୟଶାସନର ତୃତୀୟ ବର୍ଷରେ ଗାନ୍ଧର୍ବ ବିଦ୍ୟାର ଏକ ଉତ୍ସବ ଆୟୋଜନ କରିଥିଲେ। ଓଡ଼ିଶାର ବହୁ ପ୍ରାଚୀନ ଅଭିଲେଖ ଓ ଶାସ୍ତ୍ରମାନଙ୍କରୁ ଜଣାଯାଏ ମହେନ୍ଦ୍ରଗିରି ଆଦିବାସୀଙ୍କଠାରୁ ଆରମ୍ଭ କରି ତତ୍କାଳୀନ ଶାସକମାନଙ୍କ ପର୍ଯ୍ୟନ୍ତ ସବୁ ଶ୍ରେଣୀର ଲୋକ ଶିବଙ୍କର ଭକ୍ତ ଥିଲେ। ସମ୍ରାଟ ଅଶୋକ, ଖାରବେଳ, ଗଙ୍ଗ ରାଜବଂଶ, ଶୈଳୋଦ୍ଭବ ରାଜବଂଶ, ଭୌମକର ରାଜବଂଶ, ଭଞ୍ଜବଂଶ ଓ ସୋମବଂଶ ରାଜତ୍ୱ କାଳରେ ଶିବ ଉପାସନା ଓ ବୌଦ୍ଧ ଧର୍ମର ପ୍ରସାର ଲାଗି ବହୁ ମନ୍ଦିର ନିର୍ମାଣ କରାଯାଇଥିଲା। ତେଣୁ ଓଡ଼ିଶାର ସ୍ଥାପତ୍ୟ, ଭାସ୍କର୍ଯ୍ୟ, ଶିଳ୍ପକଳା, ସାହିତ୍ୟ ଓ ଲୋକକଳାରେ ଶୈବ ଧର୍ମର ପ୍ରଭାବ ପରିଲକ୍ଷିତ ହେବା ସ୍ୱାଭାବିକ।

ଖ୍ରୀଷ୍ଟିୟ ତୃତୀୟ ଓ ଚତୁର୍ଥ ଶତକରେ ଶୈବ ଧର୍ମର ପ୍ରସାର ଓଡ଼ିଶାରେ ଘଟିଛି। କିନ୍ତୁ ରାଜଧର୍ମର ମାନ୍ୟତା ପାଇଲା ଭୌମକର କେଶରୀ ରାଜାମାନଙ୍କ ରାଜତ୍ୱ କାଳରେ। ଓଡ଼ିଶାର ଜାତୀୟ ଜୀବନ ସହିତ କଳା ଓ ଧର୍ମ ଓତଃପ୍ରୋତ ଭାବେ ଜଡ଼ିତ। ଦଣ୍ଡନାଟ ଭଳି ପ୍ରାଚୀନ ଲୋକନାଟକକୁ ଆଲୋଚନା କଲାବେଳେ ଏହା ଉଦ୍‌ଭାସିତ ହୁଏ। ଦଣ୍ଡନାଟରେ ଦ୍ରାବିଡ଼ ଆର୍ଯ୍ୟ ବା ଆଦିବାସୀ ଅଣଆଦିବାସୀ

ଏମିତିକି ଜାତିଆଣ ଭେଦଭାବ ଭଳି ସଙ୍କୁଚିତ ଭାବନାକୁ ଦୂରେଇ ଦେଇ ଏକ ସୁସଂହତ ସାମାଜିକ ଜୀବନର ଉତ୍ତରୋତ୍ତର ବିକାଶ ଲାଗି ଆହ୍ୱାନ ଦିଆଯାଇଛି। ଏହାଦ୍ୱାରା ଲୋକଚିନ୍ତା ଓ ଚେତନା ଅଜ୍ଞାନରୂପକ ଅନ୍ଧକାରରୁ ଉତ୍ତୀର୍ଣ୍ଣ ହୋଇ ଜ୍ଞାନାଲୋକ ଆଡ଼କୁ ପ୍ରସାରିତ ହେବାର ସୁଯୋଗ ଲାଭ କରିପାରିଛି। ଦଣ୍ଡନାଟରେ ଅଛି ସ୍ଥାୟୀ ଆନନ୍ଦର ଅନ୍ୱେଷଣ। ସ୍ଥୂଳକ୍ରିୟା ମଧ୍ୟରେ ସୂକ୍ଷ୍ମଚେତନା ଉପଲବ୍ଧିର ଆକାଂକ୍ଷା। ଜୀବନକୁ ଯୋଗକ୍ଷେତ୍ର ଭାବରେ ଗ୍ରହଣ କରିନେବାର ପ୍ରେରଣା ଏଥିରୁ ମିଳିଥାଏ। ଚେତନାର ଉତ୍ତରତା ସହିତ ଏକ ଦିବ୍ୟ ଜୀବନର ଉପଲବ୍ଧି ନିମନ୍ତେ ଏହାର ଉପାସନା ପଦ୍ଧତି ଅଭିପ୍ରେତ। ସମାଜର ମଙ୍ଗଳ ପାଇଁ ସଭକ୍ତି ଉପାସନା ବିଭିନ୍ନ ଅନୁଷ୍ଠାନ ମାଧ୍ୟମରେ ପାଳନ କରିବାର ପ୍ରାଚୀନ ପରମ୍ପରା ଭାରତରେ ମଧ୍ୟ ପ୍ରଚଳିତ ହୋଇଆସୁଛି। ମାନବ କାୟ, ମନ ଓ ବାକ୍ୟରେ ତା'ର ସମସ୍ତ କ୍ରିୟା ଈଶ୍ୱରଙ୍କ ଉଦ୍ଦେଶ୍ୟରେ କିଭଳି ସମର୍ପଣ କରିପାରେ ତାହାର ସୂଚନା ଦଣ୍ଡନାଟରୁ ମିଳିଥାଏ। ଭକ୍ତି ଭାବାର ସମସ୍ତ କର୍ମ ଆରାଧ୍ୟ ଦେବାଦେବୀଙ୍କ ନିକଟରେ ସମର୍ପଣ କଲେ ଦିବ୍ୟ ଜ୍ଞାନର ସ୍ଫୁରଣ ଓ ପ୍ରାଣୀର ମଙ୍ଗଳ ସାଧନ ହେବାର ଦୃଢ଼ ବିଶ୍ୱାସ ଏହି ଲୋକନାଟକରେ ବିଦ୍ୟମାନ। ଦଣ୍ଡନାଟକର ନିହିତ ଚେତନାଟି ହେଉଛି ମଣିଷ ଭିତରେ ଥିବା ଆତ୍ମା ସର୍ବବ୍ୟାପୀ ଆତ୍ମାକୁ ସ୍ମରଣ କରିପାରେ ଓ ଆଧ୍ୟାତ୍ମିକ ସମାଜ ଜୀବନ ଲାଭ କରିପାରେ।

ଓଡ଼ିଶାର ଆଧ୍ୟାତ୍ମିକ ବିଶ୍ୱାସ, ଜାତୀୟତା, ଐତିହ୍ୟ ସ୍ୱାଭିମାନ. ପୁରାତତ୍ତ୍ୱ ତଥ୍ୟ, ଲୋକକଥା ଏବଂ କିମ୍ବଦନ୍ତୀ ଦଣ୍ଡନାଟରେ ପ୍ରତିଫଳିତ। ଓଡ଼ିଶା ଲୋକଜୀବନର ଚଳଣୀ, ଆଚାର ବ୍ୟବହାର, ରୀତିନୀତି, ପୋଷାକ ପରିଚ୍ଛଦ, ଖାଦ୍ୟପେୟ, ଜୀବିକା ନିର୍ବାହ ପ୍ରଣାଳୀ ଓ ଦାର୍ଶନିକ ମହତ୍ୱ ପ୍ରଖ୍ୟାପନରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ। ଏହି ଲୋକନାଟ୍ୟର ବିଷୟବସ୍ତୁ ଓ ସଂଳାପରେ ପୌରାଣିକ, ଐତିହାସିକ, ସାମାଜିକ ସମସ୍ୟା, ବିଭିନ୍ନ ପ୍ରବାଦ ପ୍ରବଚନ, ଢଗ ଢମାଳି ଓ ରଢ଼ି ଇତ୍ୟାଦି ସ୍ଥାନିତ। ପୂଜାର୍ଚ୍ଚନା ସହିତ ନୃତ୍ୟ ସଂଗୀତ ଓ ଅଭିନୟର ସମନ୍ୱୟରେ ଏହା ଋଦ୍ଧିମନ୍ତ। ସାମାଜିକ ଓ ଧାର୍ମିକ ସଂହତି ଓ ମୈତ୍ରୀ ପ୍ରତିଷ୍ଠା ଦିଗରେ ଏହି ସାଂସ୍କୃତିକ ଅନୁଷ୍ଠାନର ଅବଦାନ କିଛି କମ୍ ନୁହେଁ।

ଭାରତର ଉପକୂଳବର୍ତ୍ତୀ ଅଞ୍ଚଳରେ ଏହାର ପ୍ରଚଳନ ଥିଲେ ମଧ୍ୟ ଓଡ଼ିଶାର ଗଡ଼ଜାତ ମାନଙ୍କରେ ଦଣ୍ଡନାଟ ଉତ୍ସବ ମହାଉଲ୍ଲାସରେ ପାଳନ କରାଯାଏ। ଭାରତରେ ପ୍ରତିଷ୍ଠିତ ଲୋକନାଟକ ଗୁଡ଼ିକ ମଧ୍ୟରେ ଉତ୍ତର ପ୍ରଦେଶର ସୁଆଙ୍ଗ, ରାମଲୀଳା,

କୃଷ୍ଣଲୀଳା. ଗୁଜୁରାଟର ଭବାଇ. ମହୀଶୂରର ଯକ୍ଷଗାନ. ପଞ୍ଜାବର ନୌଟଙ୍କୀ. ମହାରାଷ୍ଟ୍ରର ତମାସା ଓ ଲଡ଼ିତେ, ରାଜସ୍ଥାନର ଝୁମର ଓ ଢୋଲାମାରୁ, ଆନ୍ଧ୍ରର ବୁରାକଥା, ବୀଥିନାଟକମ୍. ଭଗବତ୍‌ମେଳା, ତାମିଲନାଡୁର ପାଗଳ ବେଶମ୍, ବିହାରର ଲୀଳା ଓ ବିଦେଶିୟାଁ. ବଙ୍ଗଳାର ଯାତ୍ରା. ପାଲା, କୀର୍ତ୍ତନୀୟା, ଓଡ଼ିଶାର ଛଉନାଚ. ରାସ, ଘୋଡ଼ାନାଚ ଓ ଦଣ୍ଡନାଚ ଅନ୍ୟତମ। ଏ ଗୁଡ଼ିକରେ ଆଙ୍ଗିକ ବିଭବରେ ଭିନ୍ନତା ପରିଲକ୍ଷିତ ହେଉଥିଲେ ମଧ୍ୟ ଆତ୍ମିକରେ ଅଭିନ୍ନ।

ଦଣ୍ଡଯାତ୍ରା ଏକ ମୈତ୍ରୀ ଯାତ୍ରା। ଏଥିରେ ଆଦିବାସୀମାନଙ୍କର ଅଭିନୟ କୌଶଳ ଓ ଅଣ ଆଦିବାସୀମାନଙ୍କର ଉପାସନା ପଦ୍ଧତିର ମିଳନ ଘଟିଛି। ଓଡ଼ିଆ ଜାତିର ସାଂସ୍କୃତିକ ବୈଶିଷ୍ଟ୍ୟ ହେଉଛି ସାମାଜିକ ସଂହତି ମଧ୍ୟରେ ଜୀବନଯାପନ କରିବା। ତେଣୁ ଆଦିବାସୀ ଓ ଅଣଆଦିବାସୀଙ୍କ ମିଳିତ ଉଦ୍ୟମରେ ଦଣ୍ଡନାଟର ବିକାଶ ସାଧିତ ହୋଇଛି। ତଥା କଥିତ ପଛୁଆବର୍ଗ ଓ ଉଚ୍ଚବର୍ଗର ସାମାଜିକ ବ୍ୟବଧାନକୁ ଦୂରେଇ ଦେଇ ଦଣ୍ଡଯାତ୍ରା ସର୍ବଜନ ମଙ୍ଗଳକାରକ ଯାତ୍ରା ଭାବରେ ଖ୍ୟାତ। ଏହା ଏକ ମାନବବାଦୀ ଯାତ୍ରା। ଏଥିରେ ଦୁଇଟି ସଂସ୍କୃତିର ସମନ୍ୱୟ ସାଧିତ ହୋଇଛି। ହିନ୍ଦୁଙ୍କ ତନ୍ତ୍ର ଉପାସନା ପଦ୍ଧତି ଓ ଆଦିବାସୀ ମାନଙ୍କର ଅଭିନୟ ଶୈଳୀର ମିଶ୍ରଣରୂପ ଦଣ୍ଡନାଟରେ ପରିଦୃଷ୍ଟ। ଜାତିପ୍ରଥା ବିରୋଧୀ ଏହି ଧର୍ମୀୟ ଅନୁଷ୍ଠାନ ତତ୍‌କାଳୀନ ସମାଜରେ ଜନପ୍ରିୟ ଦେବତା ଶିବଙ୍କୁ କେନ୍ଦ୍ରକରି ଗଢ଼ିଉଠିଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଶାକ୍ତ, ଗାଣପତ୍ୟ, ବୌଦ୍ଧ ଓ ବୈଷ୍ଣବ ଧର୍ମର ପ୍ରଭାବକୁ ଅଙ୍ଗୀଭୂତ କରିନେଇଛି। ଏଥିରେ ଶିବ, କାଳୀ, ଗଣେଶ, ସରସ୍ୱତୀ, ଇନ୍ଦ୍ର, ସୂର୍ଯ୍ୟ ଓ ବିଷ୍ଣୁଙ୍କର ସ୍ତୁତିଗାନ ଓ ଆଶୀର୍ବାଦ କାମନା କରାଯାଇଥାଏ। ହିନ୍ଦୁଧର୍ମ ଅନ୍ତର୍ଭୁକ୍ତ ବିଭିନ୍ନ ଧାର୍ମିକ ସମ୍ପ୍ରଦାୟର ଏକ ସମନ୍ୱିତ ରୂପ ଏଥିରେ ପ୍ରତିଫଳିତ।

## ନାମକରଣ:

ଦଣ୍ଡନାଟର ନାମକରଣ ସମ୍ପର୍କରେ ବିଭିନ୍ନ ଆଲୋଚକଙ୍କ ମତ ଭିନ୍ନ ଭିନ୍ନ। ଗବେଷକ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ମତରେ ଶିବଙ୍କୁ ସନ୍ତୁଷ୍ଟ କରିବା ଲାଗି ମାନସିକକାରୀ ଭୋକ୍ତାମାନଙ୍କୁ ଦଣ୍ଡ (କଷ୍ଟ)ସହ୍ୟ ପୂର୍ବକ ତପସ୍ୟା କରିବାକୁ ପଡୁଥିବାରୁ ଏହାର ନାମ ଦଣ୍ଡନାଟ। ପୁଣି ତାଙ୍କର ଭିନ୍ନମତଟି ହେଉଛି- କାମନାଘରେ ଯେଉଁ ଦୀପ ପ୍ରଜ୍ଜ୍ୱଳିତ କରି ରଖାଯାଇଥାଏ, ସେଥିରୁ ପାଟ ଦଣ୍ଡୁଆ ଓ ପାଣି ଦଣ୍ଡୁଆ ଦୁଇଟି ଲେଖାଏଁ ଦୀପଦଣ୍ଡ ପ୍ରଜ୍ଜ୍ୱଳିତ କରିଥା'ନ୍ତି। ଏହି ଦୀପଦଣ୍ଡରୁ ଅନୁଷ୍ଠାନକୁ ଦଣ୍ଡନାଟ

କୁହାଯାଉଥିବ। ଅନ୍ୟ କେତେକଙ୍କ ମତରେ ମହାପ୍ରଳୟକାଳୀନ 'ଉଦଣ୍ଡ ତାଣ୍ଡବ ନୃତ୍ୟ'ର ଅପଭ୍ରଷ୍ଟ ରୂପ ହେଉଛି ଦଣ୍ଡନାଟ। ପୁଣି କେହି କେହି କହନ୍ତି ଦଣ୍ଡନାଟ ସ୍ଥଳୀରେ ଶିବଙ୍କ ପ୍ରତୀକ ଭାବେ ଏକ ବାଡ଼ି ବା ଦଣ୍ଡକୁ ସିନ୍ଦୁର ଓ ପାଟକନା ଗୁଡ଼ାଇ ସ୍ଥାପନ କରାଯାଉଥିବାରୁ ଏହାର ନାମ ଦଣ୍ଡନାଟ ହୋଇଛି। ଅନ୍ୟ କେତେକଙ୍କ ମତରେ ଏଥିରେ ଦଣ୍ଡ ପ୍ରଣାମ କରିବା ଓ ଦାଣ୍ଡରେ ବାଦ୍ୟନୃତ୍ୟ ଓ ଅଭିନୟ ପ୍ରଦର୍ଶନ କରିବାର ବିଧି ପାଳିତ ହେଉଥିବାରୁ ଏହାର ନାମ ଦଣ୍ଡନାଟ। ଓଡ଼ିଆ ଲୋକଗୀତ 'ଓ କାହାଣୀ' ପୁସ୍ତକରେ ଡକ୍ଟର କୁଞ୍ଜବିହାରୀ ଦାସ ଲେଖିଛନ୍ତି- "ଓଡ଼ିଶାରେ ଶୈବ ଧର୍ମର ବିକାଶ କାଳ ଅଷ୍ଟମ-ନବମ ଶତକରେ ବହୁ ବୌଦ୍ଧ ଅସ୍ପୃଶ୍ୟ ହୋଇ ରହିଥିଲେ। ଶିବ ଆରାଧନା ଏକମାତ୍ର ମୁକ୍ତିର ପନ୍ଥା ବୋଲି ପ୍ରଚାର କରାଗଲା। ଖୁବ୍ ସମ୍ଭବ ସେହି ସମୟରେ ଅସ୍ପୃଶ୍ୟ ମାନଙ୍କ ମଧ୍ୟରେ ଦଣ୍ଡନାଟ ପ୍ରବର୍ତ୍ତିତ ହୋଇଥିବ।" ସମାଜ-ବାଛନ୍ଦ ଏହି ତାନ୍ତ୍ରିକ ବୌଦ୍ଧମାନଙ୍କୁ ସମାଜ-ଗୃହୀତ କରିବା ଲାଗି ଓ ଅସ୍ପୃଶ୍ୟତା ଦଣ୍ଡରୁ ମୁକ୍ତି ଦେବାଲାଗି ଯେଉଁ ବିଧି ନିର୍ଦ୍ଧାରଣ କରାଯାଇଥିଲା ସେଥିରେ ସେମାନଙ୍କୁ ଶବର ଶବରୁଣୀ, ଚଢ଼େଇଆ, ଚଢ଼େଇଆଣି ଓ ପାଟୁଆ ଆଦି ବେଶ ହୋଇ ବିଭିନ୍ନ ସ୍ଥାନ ଭ୍ରମଣକରି ଶିବଙ୍କ ସ୍ତୁତିଗାନ କରିବାକୁ ପଡୁଥିଲା। ଏହି ଦଣ୍ଡରୁ ଦଣ୍ଡନାଟର ନାମକରଣ ଓ ସୃଷ୍ଟି ହୋଇଥାଇ ପାରେ ବୋଲି ଭିନ୍ନ ମତ ମଧ୍ୟ ପ୍ରକାଶିତ ହୋଇଛି। ଆଉ ଏକ ମତରେ କୁହାଯାଇଛି- ପ୍ରାଚୀନ ମଣିଷର ମାନସିକ ଓ ଶାରୀରିକ ଦଣ୍ଡରୁ ମୁକ୍ତି ପାଇବା ଲାଗି ଗଢ଼ିଉଠିଥିବା ଏହି ଅନୁଷ୍ଠାନର ନାମ ଦଣ୍ଡନାଟ। ଶବର, ପାଣ, ହାଡ଼ି, ଡମ୍ବ, କେଳା, କୈବର୍ତ୍ତ, ରଜକ, ମୁଣ୍ଡା ଓ କନ୍ଧ ଆଦି ସମ୍ପ୍ରଦାୟର ଲୋକମାନେ ଅଭିଶାପଗ୍ରସ୍ତ ଦେବପୁତ୍ର ଭାବେ ନୀଚ କୁଳରେ ଜନ୍ମ ନେଇଛନ୍ତି। ଏମାନଙ୍କ ମଧ୍ୟରୁ ଶବର, ମୁଣ୍ଡା ଓ କନ୍ଧ ହେଉଛନ୍ତି ଆଦିବାସୀ ଗୋଷ୍ଠୀର ଅନ୍ତର୍ଭୁକ୍ତ। କୃଷିରେ ଉନ୍ନତିକଳ୍ପେ ସମାଜରୁ ଜାତିପ୍ରଥା ଦୂରୀକରଣର ଅପରିହାର୍ଯ୍ୟକୁ ଦୃଷ୍ଟିରେ ରଖି ଆଦିବାସୀ ଓ ଅଣଆଦିବାସୀଙ୍କ ମିଳିତ ସହଯୋଗରେ ଦଣ୍ଡନାଟର ଉତ୍ପତ୍ତି ହୋଇଛି ବୋଲି ସମାଲୋଚକମାନେ ଲୋକ ବିଶ୍ୱାସ ଆଧାରରେ ମତ ପ୍ରଦାନ କରିଛନ୍ତି। ପ୍ରତିରକ୍ଷାର ବିକାଶ ଲାଗି ଏହି ଲୋକନାଟକର କାୟା ସାଧନା ବିଧି ଦଣ୍ଡ ସ୍ୱରୂପ ହୋଇଥିବାରୁ ଏହାର ନାମ ଦଣ୍ଡ ନାଟ ରଖାଯାଇ ପାରେ ବୋଲି କେହି କେହି ମତ ଦିଅନ୍ତି। ଦଣ୍ଡନାଟର ପୂଜାବିଧିରେ କୃଷିସାମଗ୍ରୀ ବ୍ୟବହାର କରାଯାଉଥିବା ବେଳେ ଏହାର ଅଭିନୟରେ ଢୋଲ ଓ କାହାଳୀର ପ୍ରଚଣ୍ଡ ବାଦ୍ୟ ସହିତ ଉଦଣ୍ଡ ନୃତ୍ୟ ଭଳି ସାମରିକ କୌଶଳ ପ୍ରଦର୍ଶିତ ହୋଇଥାଏ। ଧର୍ମ ଓ ସଂସ୍କୃତିର ସମନ୍ୱୟ ଏହି କ୍ଷେତ୍ରରେ ଲକ୍ଷଣୀୟ।

ମତାନ୍ତରେ କୁହାଯାଇଛି ଦେବ ଦେବ ମହାଦେବ ପ୍ରଚଣ୍ଡ ତାଣ୍ଡବ ନୃତ୍ୟ ପଣ୍ଡିତ। ଜଗତ ମହାମଣ୍ଡପରେ ତାଙ୍କ ଅଭିନବ ନୃତ୍ୟ ସୁଦର୍ଶନ ଉପରାନ୍ତେ ମହାଦେବୀ ଗୌରୀ ପ୍ରିୟତମଙ୍କ ସହିତ ଅଭିରାମ ନୃତ୍ୟ ପରିବେଷଣ ପୂର୍ବକ 'ଦଣ୍ଡପାଦ' ହୋଇଗଲେ। ବାମ ପାଦରେ ଉଭାହୋଇ ଦକ୍ଷିଣ ପାଦକୁ ଉର୍ଦ୍ଧ୍ୱରେ ରଖି ଏକ ସ୍ୱତନ୍ତ ଭଙ୍ଗୀମାରେ ସ୍ଥିର ହୋଇ ଏହି ଅପରୂପ ନୃତ୍ୟମୁଦ୍ରା 'ଦଣ୍ଡପାଦ'ର ପ୍ରତୀକ ଦଣ୍ଡ (ଯଷ୍ଟି)କୁ ଶକ୍ତିଭାବେ ଆରାଧନା କରାଯାଉଥିବାରୁ ଏହି ଉତ୍ସବର ନାମ ଦଣ୍ଡନାଟ।

**ସ୍ତମ୍ଭ ପରମ୍ପରା:**

ପ୍ରାଗ୍ ଐତିହାସିକ ଯୁଗରେ କାଷ୍ଠ ଦଣ୍ଡ ବ୍ୟବହାର ପ୍ରଥା ଭାରତରେ ପ୍ରଚଳିତ ଥିବାର ଦୃଷ୍ଟାନ୍ତ ପ୍ରାଚୀନ ଶାସ୍ତ୍ରମାନଙ୍କରେ ଲିପିବଦ୍ଧ। ବୈଦିକ ଯଜ୍ଞାନୁଷ୍ଠାନରେ ଯୁପ ବା ପଶୁ ବର୍ଦ୍ଧନାର୍ଥ ସ୍ତମ୍ଭ (A Sacrificial Pose) ବ୍ୟବହାର କରାଯାଉଥିଲା। ଖ୍ରୀ:ପୂ: କାଳରେ ସମ୍ରାଟ ବିକ୍ରମାଦିତ୍ୟଙ୍କ ନବରତ୍ନଙ୍କ ମଧ୍ୟର ଅନ୍ୟତମ ରତ୍ନ ବରାହମିହିରଙ୍କ ରଚିତ "ବରାହୀ ସଂହିତା" ଅନୁଯାୟୀ 'ଇନ୍ଦ୍ରଧ୍ୱଜ' ଉତ୍ସବରେ ଇନ୍ଦ୍ର ଦେବତାଙ୍କ ପ୍ରତୀକ ଭାବେ ଏକ କାଷ୍ଠଦଣ୍ଡକୁ ପୂଜା କରାଯାଉଥିଲା। ସେହିଭଳି ହିନ୍ଦୁ ବିଶ୍ୱାସ ଅନୁଯାୟୀ ବାମନଙ୍କ ଜନ୍ମତିଥି ସୁନିଆଁରେ ପାଳିତ ହୋଇଆସୁଥିବା 'ଇନ୍ଦ୍ରଧ୍ୱଜ' ଉତ୍ସବ ଏବେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ଅଙ୍ଗଲାଗି ଆଜ୍ଞାମାଳ ଆଣି ଶ୍ରୀମନ୍ଦିରରେ ପାଳିତ ହେଉଛି। 'ନିଳାଦ୍ରି ମହୋଦୟ' ଗ୍ରନ୍ଥ ଅନୁଯାୟୀ ଏଥିରେ ବ୍ୟବହୃତ ଦଣ୍ଡର ଲମ୍ବ ପଚିଶ ହାତ। 'ଶବ୍ଦକଳ୍ପ ଦ୍ରୁମ' ରେ ଦଣ୍ଡର ଅର୍ଥ ଦୁର୍ଗା ବୋଲି ସୂଚିତ। ଦଣ୍ଡନାଟରେ ବ୍ୟବହୃତ ହେଉଥିବା ଦୁଇଟି ଦଣ୍ଡ ମଧ୍ୟରୁ ଗୋଟିଏ ଶିବ ଓ ଅନ୍ୟଟି ଦୁର୍ଗାଙ୍କର ପ୍ରତୀକ।

କେନ୍ଦୁଝର ଚାରିଗଡ଼ ଭୂୟାଁପୀଢ଼ ଅଞ୍ଚଳରେ ବସବାସ କରୁଥିବା ଆଦିମାନବ ରହସ୍ୟମୟ ପ୍ରକୃତିର ଅନନ୍ତ ଶକ୍ତିକୁ ସ୍ୱୀକାର କରି ଏହାର ପ୍ରତୀକ ଭାବେ ଦଣ୍ଡପୂଜା ଆରମ୍ଭ କରିଥିଲା। ଏହା ମୂଳରେ ଥିଲା ଆଦିମାନବର ଆଧ୍ୟାତ୍ମିକ ଚେତନା। ପ୍ରକୃତିର ଅଭୁତପୂର୍ବ ସନ୍ଦର୍ଶନରେ ଅଭିଭୂତ ସରଳ ଆଦି ମାନବ ଦଣ୍ଡପୂଜାର୍ଚ୍ଚନା କାଳରେ ସ୍ୱତଃସ୍ଫୂର୍ତ୍ତ ଭାବେ ନିଜର କଳାନିପୁଣତା ପ୍ରଦର୍ଶନ କରିଛି ବିଭିନ୍ନ ନୃତ୍ୟ, ଗୀତ ଓ ବାଦ୍ୟ ମାଧ୍ୟମରେ । ତେଣୁ ଏହି ଉତ୍ସବ 'ଦଣ୍ଡନାଟ' ଭାବେ ନିଜର ସ୍ୱାତନ୍ତ୍ର୍ୟ ପ୍ରମାଣିତ କରିପାରିଛି। ତା ୩୧-୭-୧୯୮୩ ମସିହାରେ 'States Man' ସମ୍ବାଦପତ୍ରରେ ପ୍ରକାଶିତ ଏକ ଅନୁସନ୍ଧାନ ମୂଳକ ତଥ୍ୟ ଅନୁଯାୟୀ କେନ୍ଦୁଝରର ଏହି ଚାରିଗଡ଼ ଭୂୟାଁପୀଢ ଅଂଚଳ ୩,୮୦୦ ମିଲିୟନ୍ ବର୍ଷର ପ୍ରାଚୀନତା ବହନ କରେ । 'ରଙ୍ଗଭୂମି'

ବିଶେଷାଙ୍କରେ ଆଲୋଚକ ମଦନ ମୋହନ ମିଶ୍ର ତାଙ୍କ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି "ଯେତେବେଳେ ସମୁଦ୍ରର ଅତଳ ଶୟନରୁ ଆଜିର ହିମାଳୟ ତଥା ଉତ୍ତର ଭାରତ ମୁଣ୍ଡ ଟେକି ନଥିଲା, ସେତେବେଳେ ସେ ଜଳାର୍ଣ୍ଣବ ହୋଇ ରହିଥିଲା । କିନ୍ତୁ କେନ୍ଦୁଝରର ଉପରୋକ୍ତ ଅଂଚଳ ସେ କାଳରେ ତିଷ୍ଠି ରହିଥିଲା । ସେଠାରେ ବାସବାସ କରୁଥିବା ଆଦି ମାନବ ଆନନ୍ଦର ଆତିଶର୍ଯ୍ୟରେ ସ୍ୱତସ୍ଫୂର୍ତ୍ତ ଭାବେ ନୃତ୍ୟ ପ୍ରଦର୍ଶନ କରିବାକୁ ଯାଇ ପ୍ରକୃତିର ଅଦ୍ଭୁତ ଶକ୍ତିର ପ୍ରତୀକ ଭାବେ ବିଲମ୍ବିତ କାଷ୍ଠଦଣ୍ଡକୁ ଗ୍ରହଣ କରି ନେଇଛି ଓ ପୂଜାର୍ଚ୍ଚନାର ପରମ୍ପରା ସୃଷ୍ଟି କରିଛି । 'କାଳିକା ପୁରାଣ' ଅନୁଯାୟୀ ଯବନ ବୋଲି କୁହାଯାଇଥିବା ଆଦିମ ଜନଜାତିଙ୍କ ନୃତ୍ୟରେ ତାଳମାନ ନଥିଲା । (ନ ତାଳମାନ ଯବନୀୟ ନୃତ୍ୟୋ) । 'ଦଣ୍ଡନାଟ' କ୍ଷେତ୍ରରେ ମଧ୍ୟ ଏହା ସତ୍ୟ କିନ୍ତୁ ପରବର୍ତ୍ତୀ କାଳରେ ଏହାର ଉତ୍ତରଣ ଘଟିଛି ।

କେନ୍ଦୁଝର ରାଜବଂଶର ଇଷ୍ଟଦେବୀ 'ଦଣ୍ଡଦେବୀ'ଙ୍କ ନିକଟରେ ଯେଉଁ ଦଣ୍ଡନାଟ ପ୍ରଦର୍ଶିତ ହେଉଥିଲା, ତାହା ଆଦିମ ଜନଜାତିଙ୍କ ଠାରୁ ଆହରିତ । ତେବେ ପ୍ରାଚନୀ ଭାରତୀୟ ପ୍ରଚଳିତ 'ଦଣ୍ଡ' ଏକ ଆଧ୍ୟାତ୍ମିକ ଭାବଧାରାର ପ୍ରତୀକ । ଏକ ସୁବ୍ୟବସ୍ଥିତ ବିଶ୍ୱର ମେରୁ । ତେଣୁ ଏହାକୁ ପୂଜାର୍ଚ୍ଚନା କରିଛି ଆଦି ମାନବ ଅଲୌକିକ ଶକ୍ତିର ପ୍ରତୀକ ଭାବେ ! ପବିତ୍ର ସ୍ତମ୍ଭ ପରମ୍ପରା ପ୍ରାଚୀନ ଭାରତ ଭୂମିରୁ ସୃଷ୍ଟି ହୋଇ ପ୍ରାଚୀନ ପୃଥିବୀର ସଂସ୍କୃତିରେ ପରିଣତ ହୋଇଥିଲା । ମଣିଷର ଆଧ୍ୟାତ୍ମିକ ଅନୁଭୂତିର କେନ୍ଦ୍ରବିନ୍ଦୁ ଭାବେ ଏହା ପରବର୍ତ୍ତୀ କାଳରେ ସମସ୍ତ ଧର୍ମରେ ପ୍ରଭାବ ବିସ୍ତାର କରିଥିଲା ଓ 'ମେରୁ'ର ପ୍ରଭାବଶାଳୀ ଅସ୍ତିତ୍ୱକୁ ସମଗ୍ର ବିଶ୍ୱମାନବ ସ୍ୱୀକାର କରିନେଇଥିଲା । ପ୍ରାଚୀନ ଭାରତର ସ୍ତମ୍ଭ ପରମ୍ପରା ବୌଦ୍ଧଧର୍ମ ଏମିତିକି ଭାରତୀୟ ଆର୍ଯ୍ୟ ସଂସ୍କୃତିର ସୃଷ୍ଟି ପୂର୍ବରୁ ବିକଶିତ ହୋଇଥିଲା ବେଳେ ଏଥିରେ ଗ୍ରୀକ୍ ବା ପାରସ୍ୟ ସଭ୍ୟତାର ପ୍ରଭାବ ବିସ୍ତାରିତ ହୋଇନଥିଲା । ଏହି ସଂସ୍କୃତି ଧର୍ମର ଆଦି ଇତିହାସର ଏକ ଅଂଶ ବିଶେଷ। ସମଗ୍ର ଜଗତର ପ୍ରତିନିଧି ଭାବେ ବିବେଚିତ ହେଉଥିଲା ଏହି କାଷ୍ଠ କ୍ରାନ୍ତି ସ୍ତମ୍ଭ । ନୂଆଦିଲ୍ଲୀର ନେସନାଲ୍ ମ୍ୟୁଜିୟମ୍‌ରେ 'The foundation of Indian' ଉପରେ ମିଁଷ୍ଟର ଜନ୍ ଇର୍‌ୱିନ୍‌ଙ୍କ ବକ୍ତବ୍ୟଟି ହେଉଛି -

"A number of these pillars were Pre-Asokan and they represented not the beginning of monumental art but the culmination of a much more ancient tradition evolved on Indian Soil - x x x

The pillar cult was an essential part of the pre-history of Religion. They too were microcosmos penetrated by monumental axil wooden pillars..."

ସ୍ଥାନ, କାଳ ଓ ପାତ୍ର ଭେଦରେ ଦଣ୍ଡଶବ୍ଦର ପ୍ରୟୋଗ କିଭଳି କରାଯାଇଛି ତାହାର ସୂଚନା ମଦନ ମୋହନ ମିଶ୍ର ତାଙ୍କ ପ୍ରବନ୍ଧରେ ପ୍ରଦାନ କରିଛନ୍ତି । - 'ଦଣ୍ଡନୀତି' (ରାଷ୍ଟ୍ରରେ ଧର୍ମଚେତନା ରକ୍ଷା ପାଇଁ ଉଦ୍ଦିଷ୍ଟ), 'ତ୍ରି-ଦଣ୍ଡୀ' (ସମାଜ ଜୀବନଯାପନ ଚେତନାକୁ ଶୃଙ୍ଖଳିତ କରିବାକୁ କାର୍ଯ୍ୟ କରୁଥିବା ପରିବ୍ରାଜକ ସନ୍ନ୍ୟାସୀ), 'ବାକ୍‌ଦଣ୍ଡ', 'ମନୋଦଣ୍ଡ', 'କାୟ ଦଣ୍ଡ' (ମହର୍ଷି ମନୁ ସଂଯତ ଜୀବନ ଯାପନ ପାଇଁ ନିର୍ଦ୍ଧାରଣ କରିଥିଲେ) 'ଜ୍ଞାନ ମେବସ୍ୟ ଦଣ୍ଡଃ' (ଲୋଭଗ୍ରସ୍ତ ମଣିଷ ପାଇଁ ମାନବଧର୍ମୀ ସନ୍ନ୍ୟାସୀ 'ପରମହଂସ' ମାନେ ଉଚ୍ଚାରଣ କରିଥିଲେ), 'ଦଣ୍ଡବ୍ୟୂହ', 'ଦଣ୍ଡନାୟକ', 'ଦଣ୍ଡଯାତ୍ରା' (ଆଦି ଶବ୍ଦ ସମର ସଂସ୍କୃତିରେ ବ୍ୟବହୃତ ସେନା ସଜ୍ଜିକରଣ, ସେନାପତି ଓ ବିଜୟଯାତ୍ରା ଅର୍ଥରେ) 'ଦଣ୍ଡକାକ' (ଡ଼ାମରାକାଉ), 'ଦଣ୍ଡ' (୨୪ ମିନିଟ୍) 'ଦଣ୍ଡ ଦମୟ ତାମସ୍ମି' (ଗୀତାରେ ଶ୍ରୀକୃଷ୍ଣ କହୁଛନ୍ତି - ରେ ଅର୍ଜ୍ଜୁନ । ମୁଁ ଦମନକାରୀର ପ୍ରଧାନ ଅବଲମ୍ବନ 'ଦଣ୍ଡ') । 'ଦଣ୍ଡ' (ବୃଦ୍ଧଅସ୍ତ୍ର ଆଶ୍ରାବାଡ଼ି), 'ଦଣ୍ଡ ଗୌରୀ'(ମହାଭାରତରେ ଅପ୍‌ସରା) 'ନ ଦଣ୍ଡୋ ନ ଚ ଦାଣ୍ଡିକଃ' (ଶାସନ ବ୍ୟବସ୍ଥା ପ୍ରଚଳନ ପୂର୍ବରୁ ଦଣ୍ଡ ବିଧାନ ନଥିଲା), 'ଦଣ୍ଡ ଯାମ' (ମୃତ୍ୟୁପରେ ଯେ ଦଣ୍ଡପ୍ରଦାନ କରନ୍ତି) ପୃଥିବ୍ୟାତ ଇବ ମାନଦଣ୍ଡଃ (ହିମାଳୟ ଉଦ୍ଦେଶ୍ୟରେ କୁମାର ସମ୍ଭବମ୍‌ରେ କାଳିଦାସଙ୍କ ବକ୍ତବ୍ୟ), 'ଦଣ୍ଡବତ୍'(ସାଷ୍ଟାଙ୍ଗ ପ୍ରଣାମ) 'ଦଣ୍ଡବତୀ' (ଯେଉଁମାନେ ସାଷ୍ଟାଙ୍ଗ ପ୍ରଣାମ କରି କରି ଆରାଧ୍ୟ ଦେବତାଙ୍କ ନିକଟକୁ ଯାତ୍ରା କରନ୍ତି) 'ଦଣ୍ଡଧକ୍କା'(ବିଶାଳକାୟ ବାଦ୍ୟ), 'ଦଣ୍ଡତାମ୍ରୀ' (ତମ୍ବାରେ ତିଆରି ଦଣ୍ଡପରି ଝୁଲୁଥିବା ଘଣ୍ଟା) 'ଦଣ୍ଡତାମୀ' (ଦଣ୍ଡତାମ୍ରୀ ବାଦନ କରୁଥିବା ଜ୍ୟୋତିଷଙ୍କ ଉପାଧି), 'ଦଣ୍ଡମେଲା'(ତିନି ଦିଗରୁ ମୁକ୍ତ ରାଜଦୁର୍ଗ ବା ମନ୍ଦିର), 'ଦଣ୍ଡଧର'(ଶାସନ ପରିଚାଳନା କରୁଥିବା ରାଜା ବା ଶାସକ), 'ଦଣ୍ଡପାଟ' (ରାଜ୍ୟର ଆଂଚଳିକ ବିଭକ୍ତିକରଣର ଏକ ଏକ ଅଂଶ), 'ଦଣ୍ଡ'(ପୁରାଣରେ ବର୍ଣ୍ଣିତ ନବଖଣ୍ଡ ପୃଥିବୀର ପ୍ରଥମ ଖଣ୍ଡର ନାମ) । ଏଥିରୁ ଅନୁମିତ ହୁଏ 'ଦଣ୍ଡ'ର ଯେଉଁ ପ୍ରାଗୈତିହାସିକ ପରମ୍ପରା ଥିଲା ତାହା ସମୟକ୍ରମେ ବିଭିନ୍ନ ରୂପ ପରିଗ୍ରହଣ ପୂର୍ବକ ଅବ୍ୟାହତ ଗତିରେ ପ୍ରାଚୀନ ଉତ୍କଳର ବିଭିନ୍ନ ରୂପ ପରିଗ୍ରହଣ ପୂର୍ବକ ଅବ୍ୟାହତି ଗତିରେ ପ୍ରାଚୀନ ଉତ୍କଳର ଆଦିମ ଅଧିବାସୀମାନଙ୍କର ଉପାସ୍ୟ ଦେବ ପ୍ରତୀକ ଭାବେ ଅଧିଷ୍ଠିତ ।

**ଉତ୍କଳର ଦଣ୍ଡନାଟ :** ଉତ୍କଳରେ 'ଦଣ୍ଡନାଟ'ର ସୃଷ୍ଟି ଗଂଜାମ ଓ ଫୁଲବାଣୀ ଜିଲ୍ଲାର ସୀମାନ୍ତରେ ଅବସ୍ଥିତ ଚକାପାଦ ଗ୍ରାମ ଏବଂ ଅନ୍ୟ ଲୋକ ବିଶ୍ୱାସରେ ଗଂଜାମର ଗାଲେରୀ ଗ୍ରାମ । କେତେକ ଐତିହାସିକ କହନ୍ତି ଦଣ୍ଡନାଟର ଜନ୍ମସ୍ଥାନ ସୋନପୁର । ସୋନପୁର ରାଜ୍ୟରେ ତତ୍‌କାଳୀନ ସୋମବଂଶୀୟ ରାଜାମାନେ ଶୈବଧର୍ମାବଲମ୍ବୀ ହୋଇଥିବାରୁ ବୌଦ୍ଧଧର୍ମକୁ ପ୍ରତିହତ କରିବା ପାଇଁ ଦଣ୍ଡନାଟର ଆରମ୍ଭ କରିଥିଲେ । ଶିବ ପାର୍ବତୀଙ୍କ ଆଶୀର୍ବାଦ ଲାଭ କରି ବହୁ ଜନ ସାଧାରଣ ଉପକୃତ ହୋଇଥିବାର ଲୋକ କାହାଣୀ 'ଦଣ୍ଡନାଟ' ବିକାଶର ଅନ୍ୟ ଏକ କାରଣ ବୋଲି କୁହାଯାଇଥାଏ । ପୁଣି କେହି ସମାଲୋଚକଙ୍କର ମତ ହେଉଛି କେନ୍ଦୁଝରର ଚାରିଗଡ଼ ଭୂୟାଁପୀଢ ଅଂଚଳ ଦଣ୍ଡନାଟ ସୃଷ୍ଟିର ଆଦିଭୂମି । ଏହି ଲୋକନାଟକର ଉତ୍ପତ୍ତି ସଂପର୍କରେ ଗଂଜାମ, ଅନୁଗୋଳ ଓ ଆଠ ମଲ୍ଲିକରେ ଭିନ୍ନ ଭିନ୍ନ ଲୋକକଥା ପ୍ରଚଳିତ । ତେବେ ପ୍ରତ୍ୟେକ ମତାମତର ଅନ୍ତରାଳରେ ଯେଉଁ ଚରମ ସତ୍ୟଟି ସର୍ବସମ୍ମତ ତାହା ହେଉଛି ଏକ ଅଲୌକିକ ଶକ୍ତି ବିଶ୍ୱସା କରିବା ଓ ସର୍ବମଙ୍ଗଳ ପାଇଁ ତାଙ୍କୁ ବିଧିପୂର୍ବକ ଉପାସନା କରିବା ।

ଉତ୍କଳୀୟମାନେ ମୁଖ୍ୟତଃ କୃଷିଜୀବୀ । କୃଷି ସହିତ ଦେଶ ରକ୍ଷା ପାଇଁ ମଧ୍ୟ ଯୁଦ୍ଧରେ ଅଂଶ ଗ୍ରହଣ କରୁଥିଲେ । କର୍ମଜଞ୍ଜାଳ ମୁକ୍ତ ସମୟରେ ଆଧ୍ୟାତ୍ମିକ ଉତ୍ସବ ଅନୁଷ୍ଠାନ ଆଦି ପାଳନ କରିବାର ପରମ୍ପରା ସେମାନେ କେଉଁ ଅଜ୍ଞାତ କାଳରୁ ସୃଷ୍ଟି କରି ଆସିଛନ୍ତି । ବାଦ୍ୟ, ସଂଗୀତ ଓ ଅଭିନୟ ମାଧ୍ୟମରେ ଗ୍ରାମୀଣ ଲୋକେ ଆଧ୍ୟାତ୍ମିକ ଚେତନାର ଉଦ୍‌ବୋଧନ ଓ ନୀତିଶିକ୍ଷା ସହିତ ମନୋରଂଜନ ମଧ୍ୟ କରୁଥିଲେ । ଲୋକ ସମାଜ ନାଟକର ଶାସ୍ତ୍ରୀୟ ଦିଗ ପ୍ରତି ବିଶେଷ ଧ୍ୟାନ ସ୍ୱାଭାବିକ ଭାବେ ଦେଇ ନଥିଲେ । ତଥାପି ଧର୍ମାଚାରଭିତ୍ତିକ ଲୋକନାଟକ ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରଦର୍ଶିତ ହେଉଥିଲା । ସମ୍ବଲପୁର ଜିଲ୍ଲାର ଧନୁଯାତ୍ରା, ଶୀତଳ ଷଷ୍ଠୀ, କୋରାପୁଟର ଠାକୁରାଣୀ ପର୍ବ ଯାତ୍ରା, କେନ୍ଦୁଝରର ରାଜବାଟେଇବା, କଳାହାଣ୍ଡିର ଋଷ୍ୟଶୃଙ୍ଗବରଣ ଓ ହରିଜନ୍ମ, ବାଲେଶ୍ୱରର ଦଧିନାଟ, ଚଡ଼କଯାତ୍ରା, ପୁରୀ ଜିଲ୍ଲାର ଶୀତଳଷଷ୍ଠୀ, ସାହି ଯାତ, ବାହୁଡ଼ା ଯାତ୍ରାର ଲକ୍ଷ୍ମୀନାରାୟଣ ବଳି ଆଦି ଏହି ପର୍ଯ୍ୟାୟର ।

ଓଡ଼ିଶାରେ ଦଣ୍ଡନାଟ ଫୁଲବାଣୀ, ବଉଦ, ବଲାଙ୍ଗୀର, ବାଙ୍କିର ଚର୍ଚ୍ଚିକା, ଝଙ୍କଡ଼ର ଶାରଳା, କୋଣାର୍କର ରାମଚଣ୍ଡୀ, ସମ୍ବଲପୁର, ସୋନପୁର, ଢେଙ୍କାନାଳ, ହିନ୍ଦୋଳ, କଟକ, ପୁରୀ, କେନ୍ଦୁଝର, ବଡ଼ମ୍ବା, ଗଞ୍ଜାମ, ପାରଳାଖେମୁଣ୍ଡି,

ଚନ୍ଦନେଶ୍ୱର, ବାଲେଶ୍ୱର )ଆଦି ସ୍ଥାନ ମାନଙ୍କରେ କିଞ୍ଚିତ ଭିନ୍ନ ଭିନ୍ନ ରୀତିରେ ପ୍ରଚଳିତ । ଏଥିରେ ବହୁ କ୍ଷୁଦ୍ର କ୍ଷୁଦ୍ର ଘଟଣା ପୌରାଣିକ ଓ ଐତିହାସିକ କାହାଣୀ, ଉପକାହାଣୀ, ପରବର୍ତ୍ତୀ ପର୍ଯ୍ୟାୟରେ ସଂଯୋଜିତ ହୋଇ ରାତିରେ ଦୀର୍ଘ ସମୟ ପର୍ଯ୍ୟନ୍ତ ଚାଲେ । ଗ୍ରାମଦାଣ୍ଡ, ଉନ୍ମୁକ୍ତ ପ୍ରାନ୍ତର ବା ଦେବାଦେବୀ ଅଧିଷ୍ଠାନ ପ୍ରାଙ୍ଗଣରେ ଗ୍ରାମ୍ୟ ଯୁବକମାନଙ୍କ ଦ୍ୱାରା ବିଭିନ୍ନ ଅଭିନୟ ପ୍ରଦର୍ଶିତ ହୁଏ । ଦିନରେ ଶୋଭାଯାତ୍ରାରେ ବାହାରି ଗ୍ରାମ ଦାଣ୍ଡରେ କେତେକ ଘର ସାମ୍ନାରେ ପୂଜା ଉପଚାର ବିଧି ପାଳନ କରାଯାଏ । ଧୂଳି ଦାଣ୍ଡରେ ଅଭିନୟରେ ବେଶ ପୋଷାକ ବା ସଂଳାପ ପ୍ରାୟ ନ ଥାଏ। ରାତି ଅଭିନୟରେ ଏସବୁ ବ୍ୟବହାର କରାଯାଏ। ପୂର୍ବରୁ ଖୋଲାଦେହରେ ଦଣ୍ଡନାଟ ଅଭିନୀତ ହେଉଥିଲା । ପ୍ରଥମେ କେବଳ ପୂଜାଉପଚାର ମଧ୍ୟରେ ଏହା ସୀମିତ ଥିଲା ଓ ପରେ ନାଟ୍ୟାଭିନୟ ସଂଯୁକ୍ତ ହୋଇଥିବାର ଜଣାଯାଏ ।

**ଦଣ୍ଡଯାତ୍ରାର ପାଳନ ରୀତି :** - ଉପାସନା ଓ ଅଭିନୟ ଦଣ୍ଡନାଟର ଦୁଇଟି ଧାରା । ଏହି ଦୁଇଟି ଧାରା ସମ୍ମିଳିତ ଭାବେ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ଗତି କରିଥାନ୍ତି । କଳାତ୍ମକ ଦୃଷ୍ଟିରୁ ଏହା ଯେତିକି ଉତ୍କୃଷ୍ଟ ସେତିକି ଶିକ୍ଷଣୀୟ । ଜନସଚେତନତା ସୃଷ୍ଟି କରିବା ଲକ୍ଷ୍ୟରେ ଯେଉଁ ପାଳନୀ ରୀତି ଏଥିରେ ଅନୁସୃତ ତାହା ଖୁବ୍ କଷ୍ଟପ୍ରଦ ଓ ଗୁରୁତ୍ୱପୂର୍ଣ୍ଣ । ଦଣ୍ଡନାଟର ଅନ୍ୟନାମ ହେଉଛି ଘଟଯାତ୍ରା, ପାଟୁଆ ଯାତ୍ରା, ଝାମୁନାଟ ଏବଂ ଚଡ଼କଯାତ୍ରା । କିଞ୍ଚିତ ପରିବର୍ତ୍ତିତ ରୀତିରେ ଏସବୁ ପାଳନ କରାଯାଏ ଓ କାୟା କ୍ଳେଶ ମଧ୍ୟରେ ଓ ଭକ୍ତର ନିଷ୍ଠା ଏଥିରେ ପ୍ରତିପାଦିତ ହୋଇ ଏକ ଆଦର୍ଶ ସମାଜ ଜୀବନ ଅତିବାହିତ କରିବା ପାଇଁ ଅନ୍ୟମାନଙ୍କୁ ପ୍ରେରଣା ପ୍ରଦାନ କରେ।

ଦଣ୍ଡନାଟର ଅଭିନୟ କୌଶଳ ଅପେକ୍ଷା ଉପାସନା ପଦ୍ଧତିଟି ଅତ୍ୟନ୍ତ କଷ୍ଟପ୍ରଦ । ଚୈତ୍ରମାସରେ ଆରମ୍ଭ ହୋଇ ବୈଶାଖ ମାସର ପ୍ରଥମ ଦିନରେ ଏହା ସମାପ୍ତ ହୁଏ । ଆରାଧ୍ୟ ଦେବତାଙ୍କ ପ୍ରତୀକ 'ଦଣ୍ଡ'କୁ ଭିନ୍ନ ଭିନ୍ନ ଅଂଚଳରେ ଭକ୍ତାମାନେ ବିଭିନ୍ନ ରୀତିରେ ସେବାପୂଜା କରିଥା'ନ୍ତି । ପଣା ସଂକ୍ରାନ୍ତିର ସାତଦିନ, ତେରଦିନ ବା ଏକୋଇଶ ଦିନ ପୂର୍ବରୁ ଉପାସନା ଆରମ୍ଭ ହୋଇ ପଣା ସଂକ୍ରାନ୍ତି ଦିନ ହିଁ ସମାପ୍ତ ହୁଏ । ଏଥିରେ ଭକ୍ତା ମାନଙ୍କର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଭକ୍ତା ବା ଭକ୍ତ ଶବ୍ଦଟି ଭକ୍ତି ବା ଆଧ୍ୟାତ୍ମିକ ସଚେତନତାର ଅର୍ଥ ବହନ କରେ । ଏହି ଭକ୍ତାମାନେ ଜଣେ ଜଣେ ରୁଦ୍ର । ଶୈବ ଧର୍ମରେ ତେରଜଣ ରୁଦ୍ରଙ୍କର ପରିକଳ୍ପନା କରାଯାଇଛି । ସେହିଭଳି ଏଥିରେ ତେର ଜଣ ଭୋକ୍ତା ଅଂଶ ଗ୍ରହଣ କରିଥାନ୍ତି । ସେମାନେ ହେଲେ

-ପାଟ ଭକ୍ତା, ଦେଉଳ ପଡ଼ିଆ, ଚୂଆଁମାଳି, ନୀଳିଆପାତ୍ର, ଧୂପିଆ ପାତ୍ର, ବେତୁଆ ପାତ୍ର. ଚନ୍ଦନିଆ ପାତ୍ର. ଗୋବରିଆ ପାତ୍ର, ଦାନ୍ତକାଠିଆ ପାତ୍ର. ଦଣ୍ଡସାମୀ. ଭଣ୍ଡାରିଆ, ପାଟଢୋଲିଆ ଓ ବୀଣାକାର । କଠିନ ଶାରୀରିକ କ୍ଳେଶକୁ ସେମାନେ ସ୍ୱେଚ୍ଛାରେ ବରଣ କରି ବାଦ୍ୟ ଓ ସଂଗୀତ ସହ ଅଭିନୟ ପ୍ରଦର୍ଶନ କରିଥାନ୍ତି । ପଣା ସଂକ୍ରାନ୍ତି ପର୍ଯ୍ୟନ୍ତ ଦିନକୁ ଥରେ ମାତ୍ର ଭୋଜନ କରନ୍ତି । ଏହି ସମୟରେ ପାଟଭୋକ୍ତା, ପାଣି ଦଣ୍ଡୁଆ (କାଳିନୀ) ଏବଂ ଦେହୁରୀ କେବଳ ଖଇପଣା ଗ୍ରହଣ କରିଥା'ନ୍ତି । ଏଥିରେ ଆତ୍ମସଂଯମ ଓ କାୟା ସାଧନା ସବୁଠୁଁ ଗୁରୁତ୍ୱପୂର୍ଣ୍ଣ । ଘରକୁ ଯିବା, ତେଲ ଲଗାଇବା ଓ ମୁଣ୍ଡ କୁଣ୍ଡାଇବା ଆଦି ସେମାନଙ୍କ ପାଇଁ ବାରଣ । ଭକ୍ତାମାନଙ୍କର ଭୋଜନ ବିଧିବ୍ରାହ୍ମଣଧର୍ମ ଓ ବୌଦ୍ଧଧର୍ମର ଭୋଜନବିଧି ଅନୁରୂପ । ନିରାମିଶ ଭୋଜନରେ ଦେବତ୍ୱ ଆଡ଼କୁ ଅଗ୍ରସର ହେବାର ଭାବ ପ୍ରକଟିତ ।

ଦଣ୍ଡନାଟ ପାଞ୍ଚଗୋଟି ପର୍ଯ୍ୟାୟରେ ପାଳନ କରାଯାଏ । ସେଗୁଡ଼ିକ ହେଲେ ଧୂଳି ଦାଣ୍ଡ, ପାଣିଦଣ୍ଡ,ବନଦଣ୍ଡ, ଅଗ୍ନିଦଣ୍ଡ ଏବଂ ମୃତ୍ୟୁଦଣ୍ଡ । କାମନା ଘରୁ ଅଣାଯାଇଥିବା ସାମଗ୍ରୀ ଯଥା ଘଟ, ଶିବ ବେତ,ଗୌରୀ ବେତ ଓ ଦୀପ ଇତ୍ୟାଦି ଗ୍ରାମରୁ ବାହାରେ । ପ୍ରଥମ ଦିନ କାମନା ଦେବୀଙ୍କ ପ୍ରତୀକ ଜଳପୂର୍ଣ୍ଣ ଘଟ ପୂଜା ହେବ । ପୁରୋହିତ କିମ୍ବା ପାଟଭକ୍ତା ନଦୀ ବା ପୋଖରୀରୁ ଜଳପୂର୍ଣ୍ଣ ଘଟ ଉତ୍ତୋଳନ କରନ୍ତି । ଭକ୍ତାମାନେ ଏଥିରେ ଅଂଶ ଗ୍ରହଣ କରିବାର ବିଧି ରହିଛି । ଢୋଲ, ମହୁରୀ ଓ ଝଞ୍ଜାବାଦ୍ୟ ମଧ୍ୟରେ ଜଳପୂର୍ଣ୍ଣ ଘଟ ଗ୍ରାମପରିକ୍ରମା କରି ବର କିମ୍ବା ଅଶ୍ୱତ୍ଥ ବୃକ୍ଷ ମୂଳର ଏକ ପରିଚ୍ଛନ୍ନ ସ୍ଥାନରେ ପୂଜା ପାଏ । ଯେଉଁମାନେ ଶୁଭ ମନାସ କରିଥା'ନ୍ତି ସେମାନେ ଘଟ ପୂଜା ପାଇଁ ଧୂପ, ଦୀପ, ଝୁଣା, ହଳଦି, ଲିଆ ଓ ଅକ୍ଷତ ଆଦି ପୂଜା ସାମଗ୍ରୀ ପ୍ରଦାନ କରିଥା'ନ୍ତି । ଏହିପୂଜା ପରେ କାମନା ଘରେ ଘଟ ସ୍ଥାପନ କରାଯାଏ ଓ ଶିବ ପାର୍ବତୀଙ୍କ ପ୍ରତୀକ ଦୁଇ ଗୋଟି ଦଣ୍ଡ ଓ ଦୁଇଟି ଚିଲମ ରଖି ଏଠାରେ ପୂଜାର୍ଚ୍ଚନା କରାଯାଏ ତଥା ଜ୍ୱଳନ୍ତ ଅଗ୍ନିକୁଣ୍ଡକୁ ନିର୍ବାପିତ ହେବାର ସୁଯୋଗ ଦିଆଯାଏ ନାହିଁ । ଏହାପରେ କାମନା ଘରୁ ଦଣ୍ଡ ବାହାରି ଗ୍ରାମର ପ୍ରଧାନଙ୍କ ଦ୍ୱାରରେ ପହଞ୍ଚେ ଓ ଗୋବରରେ ଲିପାପୋଛା ହୋଇଥିବା ପରିଷ୍କାର ସ୍ଥାନରେ ସ୍ଥାପିତ ହୋଇ ପୂଜା ପାଆନ୍ତି । ଉପାସନା କାଳରେ 'କଳାରୁଦ୍ର ମଣିକି ଭଜରେ' ଧ୍ୱନି ଦିଆଯାଇଥାଏ ଓ ଢୋଲ, ମହୁରୀ, ଝାଞ୍ଜ ଇତ୍ୟାଦି ବାଦ୍ୟ ଚାଲିଥାଏ । ସେଠାରୁ ପୁରୋହିତ ଓ ଶେଷରେ ଦେହୁରୀଙ୍କ ଦ୍ୱାରରେ ଦଣ୍ଡପୂଜା ହୁଏ । ଏଥର ଦଣ୍ଡୁଆମାନେ ନିକାଞ୍ଚନରେ ଥିବା ଜଂଗଲିଆ ବୃକ୍ଷ ମୂଳରେ ବିଶ୍ରାମ ନିଅନ୍ତି । ସନ୍ଧ୍ୟାରେ ଗ୍ରାମବାସୀଙ୍କ ପ୍ରଦତ୍ତ

ଅରୁଆଚାଉଳ ଓ ପନିପରିବା ରୋଷେଇ ହୁଏ । ପାଟଭକ୍ତା, ପାଣିଦଣ୍ଡୁଆ ଓ ଦେହୁରୀଙ୍କ ବ୍ୟତୀତ ଅନ୍ୟମାନେ ଏହି ଅନ୍ନଭୋଗ ଗହଣ କରନ୍ତି । କାମନାଘର ଅଗ୍ନିକୁଣ୍ଡର ଲଗାଯାଇଥିବା ଦୀପ ଦ୍ୱାରା ମଶାଲ ପ୍ରଜ୍ୱଳତ ହୁଏ ଏବଂ ସେଥିରେ ଝୁଣା ମରାଯାଉଥାଏ । ଧ୍ୱନି ଓ ବାଦ୍ୟ ମଧ୍ୟରେ ଭୋକ୍ତାମାନେ ଦଣ୍ଡ ଧରି ଗ୍ରାମ ମଧ୍ୟରେ ପ୍ରବେଶ କରନ୍ତି । ଦଣ୍ଡ ସ୍ଥାପନାରେ ରାତିରେ ଅଭିନୟ ଆରମ୍ଭ ହୁଏ । ମେରୁ ପର୍ବ ବା ପଣା ସଂକ୍ରାନ୍ତି ପର୍ଯ୍ୟନ୍ତ ଦେବତାଙ୍କ ସନ୍ତୁଷ୍ଟ ଲାଗି ଦିବା ରାତ୍ର ବିଭିନ୍ନ ପର୍ଯ୍ୟାୟରେ ଦଣ୍ଡ ଉପାସନା ଓ ଘଟ ପ୍ରଦର୍ଶନ କରାଯାଏ ।

ପୂଜା ସମୟରେ ଶିବ,ପାର୍ବତୀ, ଗଣେଶ, ସରସ୍ୱତୀ, ସାରଳା, ଇନ୍ଦ୍ର, ସୂର୍ଯ୍ୟ ଓ ବିଷ୍ଣୁଙ୍କର ସ୍ତୁତି ଗାନ କରାଯାଇଥାଏ । ମୁଖ୍ୟତଃ ବାଣାକାର ଏହି ସ୍ତୁତିଗାନ କରିଥାନ୍ତି ।

କେତେକ ସ୍ଥାନରେ ସାମାନ୍ୟ ଭିନ୍ନ ରୀତିରେ ଏହି କାର୍ଯ୍ୟ ହୁଏ । 'କାମନା କୋଠୀ'ର ଭୋକ୍ତାମାନଙ୍କ ନିଷ୍ପତ୍ତି ଅନୁଯାୟୀ ଘଟ ଉତ୍ତୋଳନ ପଣା ସଂକ୍ରାନ୍ତିର ସାତ, ତେର ବା ଏକୋଇଶି ଦିନ ପୂର୍ବରୁ କରାଯାଏ । ଏହାର ନେତୃତ୍ୱ ନିଅନ୍ତି ଘାଟଭୋକ୍ତା । ଘାଟଭୋକ୍ତାଙ୍କ ସହ ଡ଼ଗରା, ତେଲିଆ, ମାଳି ଓ ଅନ୍ୟଭୋକ୍ତା (ଭଗତା)ଗଣ କାମନା ଘରୁ ଚାରିମୁଠା ବା ଛଅ ମୁଠା ଦଣ୍ଡ, ତେର ଗଣ୍ଠି ବିଶିଷ୍ଟ ସାଢେ ତିନି ହାତରେ ବେତ, ଯେଉଁଥିରେ ସଂଯୁକ୍ତ ହୋଇ ରହିଥାଏ ତମ୍ବା ବା ରୁପାରେ ତିଆରି ସର୍ପ ଓ ଗୁଡ଼ା ହୋଇଥାଏ ଲାଲ ଛିଟ କନା ଏବଂ ମାଟି ଏକ ମାଟି ଘଟ ନେଇ ନିଶାର୍ଦ୍ଧରେ ପୋଖରୀ ବା ନଈ ଘାଟକୁ ଯାଆନ୍ତି । ପାଣି ଉପରେ ଏକ ନୂତନ ବସ୍ତ୍ର ବିଛାଇ ବେତ୍ର ଦଣ୍ଡକୁ ଶୟନ ଭଙ୍ଗୀରେ ମହାସ୍ନାନ କରାନ୍ତି ଓ ଏହି ସମୟରେ ଭକ୍ତାମାନେ ସଂପୂର୍ଣ୍ଣ ସ୍ନାନ କରି ମାନସିକ ପଇତା ଧାରଣ କରନ୍ତି ଏବଂ ମରେ ଜଳପୂର୍ଣ୍ଣ ପରେ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ଦୁଇ ପ୍ରହର ସମୟରେ ଯେଉଁ 'ଧୂଳିଦଣ୍ଡ' ଅନୁଷ୍ଠିତ ହୁଏ ସେଥିରେ ବେତ୍ର ଦଣ୍ଡ ସହ ପୋଡ଼ା ମାଟି ଦଣ୍ଡ ମଧ୍ୟ ବ୍ୟବହାର କରାଯାଏ । ପୋଖରୀ ସ୍ନାନ ପରେ ପାଟଭୋକ୍ତା ଝୁଣା ଓ ଦୀପ ପାଇଁ ବ୍ୟବହାର କରୁଥିବା ଅଗ୍ନି 'ମୁତୁରୀକାଠି' ଘର୍ଷଣ ଦ୍ୱାରା ବ୍ୟବହାର କରାଯାଏ । ଏହି ସମୟରେ ପାଟଭୋକ୍ତା କହନ୍ତି -

ହୋ ଗଭତେ !

ଅନ୍ୟମାନଙ୍କ ଉତ୍ତର ହେଉଛି - 'ହୋ'

ପାଟଭୋକ୍ତା - 'କାହିଁକି ଆସିଛ' ?

ଅନ୍ୟମାନେ - 'ମଣିଷଙ୍କ ସେବା ପାଇଁ'

ପାଟଭୋକ୍ତା - 'ଏଥିରେ ଫଳ କଅଣ'?

ଅନ୍ୟମାନେ - ମନ କାମନା ପୂରଣ ହେବ ।

ପାଟଭୋକ୍ତା - ଆଚ୍ଛା ହେଉ, ସେବା ଆରମ୍ଭ କର ।

ଏଥିରେ କୃଷି ବ୍ୟବସ୍ଥାର ବିଭିନ୍ନ ଘଟଣା ଅନୁଷ୍ଠିତ ହୁଏ । ଦୁଇ ଜଣ ହାତ ଛନ୍ଦି ଛିଡ଼ା ହେବେ । ଆଉ ଜଣେ ସେହି ଛନ୍ଦା ହାତରେ ଆଣ୍ଠୁ ଭରା ଦେଇ ଅନ୍ୟ ଏକ ଗୋଡ଼ ତଳକୁ ଲମ୍ବାଇ ଲଙ୍ଗଳ ପରି ଧୂଳିରେ ଗାର ଟାଣିବେ । ଏହିଭଳି ଖତ ଦେବା, ଧାନ ବୁଣିବା, ଅମଳ କରିବା ଇତ୍ୟାଦି କାର୍ଯ୍ୟ ଅଭିନୀତ ହୁଏ । ପ୍ରତ୍ୟେକ ଅଭିନୟ ଶେଷରେ ପୂର୍ବଭଳି ପାଟଭୋକ୍ତା ଡ଼ାକ ଦେବେ ଓ ଭୋଗତାମାନେ ଉତ୍ତର ଦେବେ । ମଝିରେ ମଝିରେ 'କଳାରୁଦ୍ରମଣି ଭୋଜ ହେ' ଧ୍ୱନି ଦେଉଥିବେ ଓ ମହୁରୀ, ଢୋଲ, ଝାଞ୍ଜ ଆଦି ବାଦ୍ୟ ବାଜୁଥିବ । ଏହାପରେ ଭୋକ୍ତାମାନେ ସେହି ବେତ୍ରଦଣ୍ଡ ସହ ପାଣିକୂଳକୁ ଯାଆନ୍ତି ଓ ଆମ୍ବପତ୍ରରେ ଦନ୍ତ ମାର୍ଜନା ସାରି ସ୍ନାନ କରନ୍ତି । ବେତ୍ର ଦଣ୍ଡକୁ ସ୍ନାନ ଓ ଘଟରେ ଜଳପୂର୍ଣ୍ଣ କରିବା ପରେ ଦଣ୍ଡରେ ଅଗ୍ନି ସଂଯୋଗ କରନ୍ତି । ଏହା ହେଉଛି ପ୍ରଥମ 'ହକ୍' । ଖୋର୍ଦ୍ଧାରେ ସିକୋ ଗ୍ରାମରେ ଏହି ଉତ୍ସବ ଚାଲିଥିଲା ବେଳେ ଓଡ଼ିଶାର ଗଜପତି ସାଷ୍ଟାଙ୍ଗ ପ୍ରଣିପାତ କରିଥାନ୍ତି । ଆଗକାଳରେ ପ୍ରଥମେ ଏହି ଦଣ୍ଡଖେଳ ଗ୍ରାମର ଦଳ ବେହେରାଙ୍କ ଘର ଆଗରେ ପ୍ରଦର୍ଶିତ ହେବା ସହିତ 'ପତନି' ବନ୍ଧା ଯାଇଥିଲା । ଏହାପରେ ଅନ୍ୟ ଦୁଆର ମାନଙ୍କରେ ଅନୁଷ୍ଠିତ ହୁଏ । ବାଟରେ ଗଲାବେଳେ ଗୁହାରିଆମାନଙ୍କୁ 'ହକ୍' ଦିଆଯାଏ ଓ ସେମାନେ ଦକ୍ଷିଣା ଦିଅନ୍ତି ।

'ତାରିତର' ଦଣ୍ଡନାଟ ଯେଉଁମାନଙ୍କ ଦୁଆରେ 'ଲିଙ୍ଗପୁରାଣ' କରିବାର ଯାଚଞ୍ଚା ଥାଏ ସେମାନଙ୍କ ଘର ଆଗରେ ଅନୁଷ୍ଠିତ ହୁଏ । ଲିଙ୍ଗ ପୁରାଣ ଯାତ୍ରା ହେବା ପୂର୍ବରୁ ପ୍ରଥମେ 'ପ୍ରଭା' ନାଚ ଦ୍ୱିତୀୟରେ ସାପୁଆ କେଳା ଓ ତା'ପରେ କେଳା କେଳୁଣୀ, ଚଢେୟା ଚଢେୟାଣୀ ଓ ଅନ୍ୟ ସବୁ ଅଭିନୟ ପ୍ରଦର୍ଶିତ ହୋଇଥାଏ । ପୂର୍ବରୁ ଏହି ଦଣ୍ଡ ମୁସଲମାନ ବସ୍ତିକୁ ଯାଇ ଦଳେଇ, ଦଣ୍ଡକାର ଆଦିଙ୍କ ଦ୍ୱାରରେ 'ହକ୍' ଦିଆ ଯାଉଥିଲା ଓ ସେମାନେ ପତନ ବାନ୍ଧିଥିଲେ । ଦଣ୍ଡନାଟ ଧର୍ମ ନିରପେକ୍ଷତାକୁ ଗୁରୁତ୍ୱ ଦେବାର ପ୍ରମାଣ ଏଥିରୁ ମିଳିଥାଏ ।

ଗଂଜାମ ଜିଲ୍ଲାରେ ଭଗତାମାନେ ଯାଚଞ୍ଚା ବା ମାନସିକ କରିଥିବା ବ୍ୟକ୍ତିଙ୍କ ଘରକୁ ଯାଇ ଦ୍ୱିପ୍ରହରେ ଓ ରାତିରେ ଦଣ୍ଡ ଉପାସନା ଓ ଅଭିନୟ କରିଥାନ୍ତି ।

ଖୋର୍ଦ୍ଧା ସିକୋ ଗ୍ରାମରେ ଶିବ ପାର୍ବତୀ ଓ ଅନ୍ୟ ଦେବାଦେବୀଙ୍କ ବନ୍ଦନା ଗାନ କରାଯାଇଥାଏ । ଦୁଇ ଜଣ ନାଟୁଆ ସେମାନଙ୍କ ପିଠିରେ କାଳିଚିତ୍ର ଶୋଭିତ ପ୍ରଭାବାନ୍ଧି ତାଣ୍ଡବ ନୃତ୍ୟ ପରିବେଷଣ କରନ୍ତି । ଏହା ପରେ ଅନ୍ୟାନ୍ୟ ନୃତ୍ୟ ଗୀତ ଆଦି ଚାଲେ । ଅଭିନୟ ଶେଷରେ ବୀଣାକାର ମାଗୁଣି କରେ ।

ଭୋର ସମୟରେ ଦିଅଁକୁ ନେଇ ଦାଣ୍ଡୁଆମାନେ ଯାତ୍ରାବାଲାଙ୍କ ସହ 'କାମନାକୋଠୀ'କୁ ଯାଆନ୍ତି । ସେଠାରେ ଦିଅଁ ଓ ଯାତ୍ରା ସରଞ୍ଜାମ ରଖାଯାଏ । ଯେଉଁ କୋଠିରେ ଯେତେଦିନ ପାଇଁ ପାଣି ତୋଳାଯାଇଥାଏ ସେତେଦିନ ଏହି ଉତ୍ସବ ସେଠାରେ ଚାଲେ ।

ଯେଉଁ ତେରପଦ ବିଶିଷ୍ଟ ବେତ୍ରଦଣ୍ଡ ବ୍ୟବହାର କରାଯାଏ ତାହା ଶିବପତ୍ନୀ ଗୌରୀଙ୍କ ଅଙ୍ଗସୃଷ୍ଟ ବୋଲି ବିଶ୍ୱାସ କରାଯାଏ । ଦଣ୍ଡନାଟରେ ବହୁ ସ୍ଥାନରେ ବେତ୍ରଦଣ୍ଡ ବ୍ୟବହାର କରାଯାଉଥିବା ବେଳେ କନ୍ଧମାଳ ଜିଲ୍ଲାରେ କେନ୍ଦୁ ଓ ପାଟଳିଦଣ୍ଡ ଓ ବୌଦ ଜିଲ୍ଲାରେ ମହୁଲଦଣ୍ଡ ବ୍ୟବହୃତ ହୁଏ । ଦଣ୍ଡପୂଜାକୁ କେତେକ ସ୍ଥାନରେ ଗୋଠପୂଜା ବା ବାଡ଼ିପୂଜା ବୋଲି ମଧ୍ୟ କୁହାଯାଏ । ଅଂଚଳ ଭେଦରେ ଭିନ୍ନ ଭିନ୍ନ ଦେବୀଙ୍କ ନାମ ଅନୁଯାୟୀ ଘଟ ପ୍ରତିଷ୍ଠା କରାଯାଏ । ଏହି ଦେବୀମାନେ ହେଲେ ପରମେଶ୍ୱରୀ, ପାର୍ବତୀ, ଗୌରୀ, ସମଲାଇ, ବିମଳାଇ, ଦୁର୍ଗା, କାଳି, ରୁଦ୍ରକାଳି ଓ ବରାଳଦେବୀ । ଏହା ଶକ୍ତିତନ୍ତ୍ର ପଦ୍ଧତିର ସ୍ତମ୍ଭେଶ୍ୱରୀ ଉପାସନା ପର୍ଯ୍ୟାୟର ବୋଲି କୁହାଯାଇପାରେ । କନ୍ଧମାଳ ଜିଲ୍ଲାର ବନ୍ଧଗଡ଼ ଠାରେ କରାଳ ଦେବୀଙ୍କ ଛାଟ ଖମ୍ବ ନିର୍ମାଣ ଓ ପ୍ରତିଷ୍ଠା ବା ଦଣ୍ଡନାଟର ନୂତନ ପ୍ରଭା ପ୍ରସ୍ତୁତି ପଦ୍ଧତି ଜଗନ୍ନାଥଙ୍କ ନବ କଳେବର ପ୍ରତିଷ୍ଠା ପଦ୍ଧତି ସହ ସମାନ ବୋଲି କେତେକ ଗବେଷକ ମତ ଦେଇଛନ୍ତି ।

ବ୍ୟକ୍ତି ଓ ସମାଜର ସର୍ବାଙ୍ଗୀନ ବିକାଶ ପାଇଁ ଅଲୌକିକ ଦୈବୀଶକ୍ତିର ଆଶୀର୍ବାଦ କାମନା କରିବା ଭଳି ପ୍ରାଚୀନ ଲୋକ ବିଶ୍ୱାସରୁ ସୃଷ୍ଟି ହୋଇଥିବା ଦଣ୍ଡନାଟ ପରବର୍ତ୍ତୀ କାଳରେ ହିନ୍ଦୁଧର୍ମର ଉପାସନା ପଦ୍ଧତି ଅନ୍ତର୍ଭୁକ୍ତ ହୋଇ ପଡ଼ିଛି । ପ୍ରାଚୀନତା ଓ ନୂତନତାର ଅପୂର୍ବ ମିଶ୍ରଣ ଏଥିରେ ସଂଘଟିତ ହୋଇଛି ।

ଦଣ୍ଡ ଉପାସନା ପଦ୍ଧତି ଅନୁଯାୟୀ ଦ୍ୱିତୀୟ ଦିନ ସକାଳେ ଭୋକ୍ତା ଓ ମାନସିକ କରିଥିବା ଭକ୍ତମାନେ 'କଳାରୁଦ୍ର ମଣିକି ଭଜ ହେ' ଧ୍ୱନି ଓ ବାଦ୍ୟ ସହ ନିଜ ଗ୍ରାମରୁ ଅନ୍ୟ ଗ୍ରାମକୁ ଯାତ୍ରା କରନ୍ତି । ଗ୍ରାମ ଦାଣ୍ଡରେ ଗଲାବେଳେ ଯେଉଁ ଗୃହସ୍ଥ ନିଜ ଘର ସାମ୍ନାରେ ଲିପାପୋଛା କରିଥାଏ ସେଠାରେ ଦଣ୍ଡ ସ୍ଥାପନା କରି ଦେହୁରୀ ଦଣ୍ଡ ପୂଜା କରନ୍ତି ଓ ବୀଣାକାର ଶିବ କାଳିଙ୍କର ସ୍ତୁତି ଗାନ କରନ୍ତି । ପୂଜା ପରେ ଦଣ୍ଡୁଆମାନେ ନିକାଞ୍ଚନ ସ୍ଥାନରେ ବିଶ୍ରାମ ନିଅନ୍ତି ।

ଦିନ ଦ୍ୱିପ୍ରହର ବେଳେ ଜଳୁଥିବା ନିଆଁ ବରିଆରେ ଝୁଣାମାରି ଧ୍ୱନି ଓ ବାଦ୍ୟ ସହ ଦଣ୍ଡ ସ୍ଥାପନା କରାଯାଏ । 'ଧୂଳିଦଣ୍ଡ' ଆରମ୍ଭ ହୁଏ । ଭୋକ୍ତାମାନେ ଦାଣ୍ଡର ଉତପ୍ତ ବାଲି ଉପରେ ଗୃହସ୍ଥର ମଙ୍ଗଳ ଉଦ୍ଦେଶ୍ୟରେ ଆରାଧ୍ୟ ଦେବତାଙ୍କୁ ସନ୍ତୁଷ୍ଟ କରିବା ଲାଗି ବିଭିନ୍ନ ଭଙ୍ଗୀରେ ଦଣ୍ଡ ପ୍ରଦର୍ଶନ କରନ୍ତି । ହଳ, ବଳଦ ଓ ହଳିଆ ହୋଇ ତାତିଲା ଭୂଇଁରେ ଶୋଇ, ହାମୁଡ଼େଇ, ଭୂମି ହଳ କରନ୍ତି ଭୋକ୍ତାମାନେ । ଚାଷୀ ଧାନ ବୁଣେ, ବେଉଷଣ କରେ, ବିଲ ବାଛେ, ଧାନ କେଣ୍ଡା ଧରେ ଓ ପାଚେ ଓ ଶେଷରେ ଧାନକଟା ଓ ଅମଳର ଅଭିନୟ ପ୍ରଦର୍ଶିତ ହୁଏ । ବିଲରେ ଚାଷ କରୁଥିବା ହଳିଆ ପାଇଁ ତା'ର ସ୍ତ୍ରୀ ହାତ ଧରି ଆସେ ଓ ସେମାନଙ୍କ ମଧ୍ୟରେ ରାଗ, ରୁଷା, ଥଟ୍ଟା, ପରିହାସ ଚାଲେ ।

ଲୋକ ବିଶ୍ୱାସରେ ଶିବ ଜଣେ ଗୃହସ୍ଥ କୃଷକ ଓ ତାଙ୍କର ଘରଣୀ ପାର୍ବତୀ । ବାସୁଆ, ପବନା ତାଙ୍କର ଦୁଇ ବଳଦ । ଶିବଙ୍କ କ୍ଷେତରେ ଚାଷ କରିବାର କଷ୍ଟକର ଅଭିନୟ ମାଧ୍ୟମରେ ଭୋକ୍ତାମାନେ ଏହି ବିଶ୍ୱାସକୁ ବଳବତ୍ତର କରିଛନ୍ତି । ବାଲେଶ୍ୱର ଜିଲ୍ଲାର ଲଙ୍ଗଳେଶ୍ୱର ମହାଦେବ ମନ୍ଦିର ପ୍ରାଙ୍ଗଣରେ ପଥର ନିର୍ମିତ ବାସୁଆ, ପବନା ଓ ପଥର ନିର୍ମିତ ଲଙ୍ଗଳ ବିଦ୍ୟମାନ । ସେଠାରେ ଥିବା ପଡ଼ିଆ, ତାଙ୍କର ଚାଷ ଭୂମି । ଭୀମ ତାଙ୍କ ଘରେ କିଛି ଦିନ ରହି ଚାଷ କରୁଥିବାର କିମ୍ବଦନ୍ତୀ ପ୍ରଚଳିତ । ସେହିଭଳି ଗଂଜାମର ଚିଲିକା କୂଳରେ ଲଙ୍ଗଳେଶ୍ୱର ଗ୍ରାମରେ ଲଙ୍ଗଳେଶ୍ୱର ମହାଦେବଙ୍କ ନିକଟରେ ଦଣ୍ଡନାଟ ହୁଏ । ବଙ୍ଗଳାରେ 'ଶିବେର ଖାଦନ' ପର୍ବରେ ଅନୁରୂପ ଚାଷର ଅଭିନୟ ହୁଏ ବୋଲି ଡ଼କ୍ଟର କୁଞ୍ଜବିହାରୀ ଦାଶ ଉଲ୍ଲେଖ କରିଛନ୍ତି । ଧୂଳିଦାଣ୍ଡରେ ଭୋକ୍ତାମାନେ ଚାଷକାମ, କୂପ ଓ ପୋଖରୀ ଖନନ ଆଦି କାର୍ଯ୍ୟ ଅଭିନୟ ମାଧ୍ୟମରେ ପ୍ରଦର୍ଶନ କରିଥାନ୍ତି ।

ପାଣିଦଣ୍ଡର ଆରମ୍ଭ ହୁଏ ଧୂଳିଦଣ୍ଡ ପରେ । ନଦୀ ବା ପୋଖରୀ କୂଳରେ ଦଣ୍ଡ ସ୍ଥାପନା କରାଯାଏ । ଭୋକ୍ତାମାନେ ସ୍ନାନ କରନ୍ତି । ଯାହାକୁ ଠାକୁର ପ୍ରସନ୍ନ ହୁଅନ୍ତି ତାଙ୍କୁ କାଳିସୀ କୁହାଯାଏ । ତେରବୁଡ଼ ପକାଇ ପାଣି ମଧ୍ୟରେ ଭୋକ୍ତାମାନେ ପରସ୍ପର କାନ୍ଧ ଉପରେ ଠିଆ ହୋଇ ଦେଉଳ ନିର୍ମାଣ କରନ୍ତି । ପାଣିରେ ବୁଡ଼ି ଆଞ୍ଜୁଳାରେ ବାଲି ଆଣି ବାଲୁକାଶିବ କୂଳରେ ଗଢନ୍ତି । ଏଠାରେ ଦଣ୍ଡପୂଜା କଲା ପରେ ଅଗ୍ନିଖେଳ ପ୍ରଦର୍ଶନ କରାଯାଏ । ଏକ ନିକାଞ୍ଚନ ସ୍ଥାନକୁ ଯାଇ ଭୋକ୍ତାମାନେ ଦଣ୍ଡଙ୍କୁ ଲିଆପଣା ଭୋଗ ଲଗାନ୍ତି ।

ବୃକ୍ଷବହୁଳ ନିକାଞ୍ଚନ ସ୍ଥାନରେ ଦଣ୍ଡଙ୍କୁ ଯେଉଁ ପୂଜା କରାଯାଏ ତାହାକୁ ବନଦଣ୍ଡ କୁହାଯାଏ । ଏଠାରେ ଅକଟା ଅବଟା ଓ ତେଲ ଲୁଣ ପଡ଼ି ନଥିବା ରୋଷେଇ ହୁଏ । ଖାଦ୍ୟରୁ ବାଲିଗୋଡ଼ି , ଧାନ, ବାହାରିଲେ କିମ୍ବା ବାହାରର ପାଟି ଶୁଭିଲେ ଭୋକ୍ତାମାନେ ଖାଦ୍ୟ ନଖାଇ ଉଠି ଯିବାର ରୀତି ପ୍ରଚଳିତ ଥିବାରୁ ଏହି ସମୟରେ ଉଚ୍ଚ ଧ୍ୱନିରେ ବାଦ୍ୟ ବଜାଯାଏ ।

ପାଞ୍ଚଗୋଟି ନିଆଁ ବରୁଆରେ ଝୁଣା ମରା ହୋଇ ଦଣ୍ଡଧାରଣ ପୂର୍ବକ ଭକ୍ତର ଗୃହ ଅଭିମୁଖେ ଭୋକ୍ତାମାନେ ଯେଉଁ ଯାତ୍ରା କରନ୍ତି ତାହାକୁ ଅଗ୍ନିଦଣ୍ଡ କୁହାଯାଏ ।

ଦଣ୍ଡନୃତ୍ୟ ହେଉଛି ଦଣ୍ଡ ଉପାସନାର ଅନ୍ତିମ ପର୍ଯ୍ୟାୟ । ମୁକ୍ତ ମଂଚରେ ଏହା ଅଭିନୀତ ହୁଏ । ଭୋକ୍ତାମାନଙ୍କ ବ୍ୟତୀତ ମାନସିକ କରିଥିବା ବ୍ୟକ୍ତି ଏବଂ ସ୍ଥାଧାରଣ ଗ୍ରାମବାସୀ ଏଥିରେ ଅଂଶ ଗ୍ରହଣ କରିଥାନ୍ତି । ଏଥିରେ ହର ପାର୍ବତୀ ଚଢ଼େୟା, ଚଢ଼େୟାଣୀ, ବାବାଜୀ, କାଳିକା ବା ପ୍ରଭା, ମୁଖୀ, ଚିତାକୁଟା, ବୀଣାକରିଆ, ହାଡ଼ି ହାଡ଼ିଆଣୀ, କୋଳିବିକା, ସାପକେଳା, ଭାଲୁଆ, ବାଇଧନ, କେଳା କେଳୁଣୀ, ସଖୀନାଚ, ପତ୍ର ସଉରା, କୃଷ୍ଣ ଚରିତ, ଯୋଗୀ ଯୋଗୀଆଣି, ଫକର ଫକିରାଣୀ, ରାଧାକୃଷ୍ଣ ମିଳନ, ନଟୁଚୋରୀ, ହରିଶ୍ଚନ୍ଦ୍ର-ଶୈବ୍ୟା ଓ ହିରଣ୍ୟକଶିପୁ ଉପାଖ୍ୟାନ ଆଦି ଅଭିନୀତ ହେବାପରେ ଆଜିକାଲି ଅପେରା ମଧ କରାଗଲାଣି। ଏଥିସହିତ ପାରିବାରିକ ଓ ସାମାଜିକ ଜୀବନର ବିଭିନ୍ନ ଘଟଣାକୁ ଯୋଡ଼ିଦେଇ ଲୋକଙ୍କ ମନୋରଞ୍ଜନ ପାଇଁ ସୁଆଙ୍ଗ ମଧ ପ୍ରଦର୍ଶନ କରାଯାଉଛି। ଦେବାଦେବୀଙ୍କ ବ୍ୟତୀତ ଏଥିରେ ଅଭିନୟ କରୁଥିବା ଚରିତ୍ରମାନେ ଦରିଦ୍ର ଓ ଅବହେଳିତ ମଣିଷର ପ୍ରତିନିଧି। କିନ୍ତୁ ଭକ୍ତି ଭାବନା ଓ ଆଧାତ୍ମିକତା ହେଉଛି ଏମାନଙ୍କର ମୂଲ୍ୟବାନ ସମ୍ପତ୍ତି।

ଦଣ୍ଡନାଟ ଆରମ୍ଭରେ ହାଡ଼ିଆଣି ଶିବ ପାର୍ବତୀଙ୍କ ବନ୍ଦନା ଗାନ କରନ୍ତି। ଦଣ୍ଡନାଟରେ ଶୈବ ଓ ଶାକ୍ତ ତନ୍ତ୍ରର ସମନ୍ୱୟ ଘଟିଛି। ପ୍ରଭା ଚରିତ୍ରଟି ହେଉଛି କାଳୀ ବା ଶକ୍ତିର ପ୍ରତୀକ । ତାଙ୍କ ଦେହର ରଙ୍ଗ ନୀଳ, ବସ୍ତ୍ର ହେଉଛି ଛିଟଘାଗରା, ପାଦରେ ଘୁଙ୍ଗୁର ଓ ହାତରେ କାଠର ଖଣ୍ଡା ଓ ଢାଲ। ଏହି ଅଭିନୟରେ କାଳୀ (ଶକ୍ତି)ଙ୍କ ଉତ୍ସର୍ଗୀକୃତ ଭାବ ରହିଛି। ଏହା ବୈଷ୍ଣବ ଧର୍ମର 'ନମଗ୍ନଭାବ' ଓ ବୌଦ୍ଧଧର୍ମର ନିର୍ବାଣ ଦର୍ଶନ ସହ ସମାନ ।

ନନ୍ଦୀ, ଚରିତ୍ର ଶିବଙ୍କ ଆଗମନର ସୂଚନା ଦେବା ପରେ ଶିବ ମଞ୍ଚକୁ ଆଗମନ କରନ୍ତି । ଜଟାଜୁଟ, ସର୍ପ, ଡମ୍ବରୁ ଓ ବ୍ୟାଘ୍ରଛାଲ ଧାରଣ ପୂର୍ବକ । ତାଙ୍କ ସ୍ମରଣରେ ପାର୍ବତୀ ମଞ୍ଚକୁ ଆଗମନ କରନ୍ତି ଜଣେ ଜଞ୍ଜାଳଗ୍ରସ୍ତ ଗୃହିଣୀ ରୂପରେ ।

ସନ୍ନ୍ୟାସୀ ବା ବାବାଜୀ ଚରିତ୍ର ମଞ୍ଚରେ ନୀତିଶାସ୍ତ୍ର ଓ ବ୍ରହ୍ମଜ୍ଞାନ ଓ ଶିବଙ୍କ ମହିମା ପ୍ରଖ୍ୟାପନ କରନ୍ତି । ଯୋଗୀ କେନ୍ଦରା ଓ ଥାଳ ଧରି ସଂଗୀତ ଗାନ କରେ । କେଳା ହାତରେ ନଳ ଓ ଫାଶ ଧରି ମଞ୍ଚକୁ ଆସେ ଓ ପଞ୍ଚ ଦେବତାଙ୍କ ବନ୍ଦନା ଗାନ କରେ । କନ୍ଧ ଓ ତା'ର ପତ୍ନୀ ମଂଚରେ ଶିବ ବନ୍ଦନା ଗାନ କରନ୍ତି ।

ଦଣ୍ଡନାଟରେ ପାଟ ପଟୁଆର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସେ ଦଣ୍ଡ ଉପାସନାର ବିଭିନ୍ନ ପର୍ଯ୍ୟାୟକୁ ପରିଚାଳନା କରେ ।

ସେ ଚଢ଼େୟା ବେଶରେ ମଂଚକୁ ଆସେ ଓ ଗୀତ ଗାଇବା ପରେ ଚଢ଼େୟାଣୀକୁ ଡ଼ାକେ। ଚଢ଼େୟାଣୀ ତାକୁ ମୟୂର ମାରିଆଣି ଦେବାକୁ କହେ । ଉତ୍ତରରେ ଚଢ଼େୟା କହେ ଶିବଙ୍କର ଆଜ୍ଞା କୋଇଲି, ଶୁଆ, ଶାରୀ ଓ କପୋତକୁ ହତ୍ୟା କରିବା ଅନୁଚିତ । ପତ୍ନୀର ଅନୁରୋଧରେ ସେ ମୟୂର ମାରିବାରୁ ତାକୁ ସର୍ପ ଦଂଶନ କରେ ଓ ତା'ର ମୃତ୍ୟୁ ହୁଏ । ଚଢ଼େୟାଣୀ ବନରେ ପହଞ୍ଚି ସ୍ୱାମୀର ପୂର୍ବଜୀବନ ଦାନ କରିବାକୁ ଶିବ ପାର୍ବତୀଙ୍କୁ ଆକୂଳ ସ୍ତୁତି କରେ ଓ ପାର୍ବତୀଙ୍କ ଅନୁରୋଧରେ ଶିବ ଚଢ଼େୟାକୁ ଜୀବନ ଦାନ କରନ୍ତି ଓ ଶିକାର କରିବାକୁ ବାରଣ କରନ୍ତି । ଏଥିରୁ 'ଜୀବେ ଦୟା'ର ନୀତିଶିକ୍ଷା ସମାଜକୁ ମିଳିଥାଏ । ପୂର୍ବ ପ୍ରଚଳିତ ବଳି ଓ ଶୀକାର ପ୍ରଥାକୁ ଉଚ୍ଛେଦ କରିବା ପାଇଁ ଏହା ଏକ ଆହ୍ୱାନ ।

ପତ୍ର ସଉରା ଦେବୀ ବନ୍ଦନା କରେ । ପତ୍ର-ସଉରୁଣୀ ତନ୍ତ୍ର ଦେବୀର ପର୍ଣ୍ଣ ଶବରୀର ରୂପାନ୍ତର ବୋଲି ସମାଲୋଚକମାନେ ମତ ଦାନ କରିଥାନ୍ତି ।

ବାଇଧନ ନପୁଂସକ । ସେ ଅଭିଶପ୍ତ ଗନ୍ଧର୍ବ ବୋଲି ଲକ୍ଷ୍ମୀନାରାୟଣ ସାହୁଙ୍କ ମତ । ଶେଷରେ ବୁଣାକାର ମଞ୍ଚକୁ ଆସନ୍ତି । ତାଙ୍କର ପରିଧାନ ଘାଗରା, ଟୋପି, କାଞ୍ଚଲା, କାନ୍ଧରେ ଧନୁ ଆକୃତି ବୀଣା ଓ ବୀଣାରେ ସାତଗୋଟି ଘଣ୍ଟି ଲାଗିଥାଏ । ତା' ହାତରେ ଥାଏ ବେତ । ବୀଣାକାର ଓ ବୀଣାକାରୁ ଆଣି କଳାର୍ପ ଓ ରତି ଦେବୀ । ବୀଣା ହେଉଛି ପୁଷ୍ପଧନୁ । ପାଣି ଦାଣ୍ଡୁଆ (କାଳିସୀ) ହାତରେ ଦୀପଶିଖା ଧରି ଆସେ । ମଦନଭସ୍ମ ଅଭିନୟ ପରେ ବୀଣାକାର ଓ ବୀଣାକାରୁଆଣି ସଭାଜନଙ୍କ ଉଦ୍ଦେଶ୍ୟରେ ବନ୍ଦନାଗାନ କରନ୍ତି । ଦଣ୍ଡନାଟ ସମାପ୍ତ ହୁଏ ଓ ଦଣ୍ଡପୂଜା ହୁଏ । ଦେହୁରୀ ଭୋଗରାଗ ଲଗାଇବା ପରେ ଆଳତୀ କରେ ଓ ଦଣ୍ଡଯାତ୍ରୀମାନେ 'କଳାରୁଦ୍ର ମଣିକି ଭଜହେ' ଧ୍ୱନି ଦିଅନ୍ତି ।

ବାଦୀ ଦଣ୍ଡନାଟରେ ଦୁଇ ଦଳଙ୍କ ମଧ୍ୟରେ ପାଣ୍ଡିତ୍ୟ ଓ ନୃତ୍ୟକଳା ପ୍ରଦର୍ଶନର

ଲଢ଼େଇ ହୁଏ, ବିଚାରକ ପ୍ରଶ୍ନ କରନ୍ତି, ଯିଏ ଉତ୍ତର ଦେଇ ନ ପାରେ ସେହି ଦଳ ପରାଜିତ ହୁଏ ।

ମେରୁ ପର୍ବ- ମେରୁ ଉତ୍ସବ ପଣା ସଂକ୍ରାନ୍ତି ପୂର୍ବଦିନ ଅନୁଷ୍ଠିତ ହୁଏ । କାମନା କୋଠିରେ ଦଣ୍ଡଖେଳ ହେବା ପରେ ଖନ୍ଦା ନିଆଁରେ ଚାଲିବା କାର୍ଯ୍ୟ ହୁଏ । ଓଲଟା ଦଣ୍ଡ ଅନେକ ସ୍ଥାନରେ ପାଳିତ ହୁଏ । କୋଠିରେ ଏକ ବର୍ଗକ୍ଷେତ୍ର କୁଣ୍ଡ ମଧ୍ୟରେ କାଠ କୋଇଲାରେ ଅଗ୍ନି ସଂଯୋଗ କରି ଝୁଣା ମରା ହୁଏ । ଦୁଇଟି ଖମ୍ବ ଉପରେ ଢ଼ୁଆଳି ବନ୍ଧା ହୁଏ ଓ ପାଟବେତକୁ ପହଣ୍ଡି କରାଯାଏ । ପାଟବେତକୁ ପରେ ସ୍ୱାଭାବିକ ଅବସ୍ଥାକୁ ଅଣାଯାଏ । ଢ଼ୁଆଳିରେ ପାଟଭୋକ୍ତାଙ୍କ ଗୋଡ଼କୁ ବନ୍ଧାଯାଏ ଓ ମୁଣ୍ଡକୁ ଅଗ୍ନିକୁଣ୍ଡ ଆଡ଼କୁ ରଖି ତିନି ଥର ଝୁଲାଯାଏ । ଏହାପରେ ଅନ୍ୟଭୋକ୍ତାମାନଙ୍କୁ ସେହିଭଳି କରାଯାଏ । ଏହା କନ୍ଧମାନଙ୍କର ମେରିଆ ବା ବଳିପ୍ରଥା । ତେଣୁ ଏହାକୁ ମେରୁ ପର୍ବ କୁହାଯାଏ । ହୁଏତ ସମଗ୍ର ବିଶ୍ୱ ଅବସ୍ଥା ଯେଉଁ କେନ୍ଦ୍ରକୁ ଆଧାର କରି ପରିଚାଳିତ ହେଉଛି ସେହି ଅଲୌକିକ ଦୈବୀଶକ୍ତି ସମ୍ପନ୍ନ ମେରୁର ବିଶ୍ୱାସରେ ପଣାସଂକ୍ରାନ୍ତିର ପୂର୍ବଦିନ ପାଳିତ ହେଉଥିବା ଉତ୍ସବର ନାମ ମେରୁ ପର୍ବ ହୋଇପାରେ । ଏହା ପଛରେ ସୂର୍ଯ୍ୟ ଉପାସନାର ଉଦ୍ଦେଶ୍ୟ ନିହିତ । କାରଣ ଏହି ସମୟ ସୌରବର୍ଷର ଶେଷ ସମୟ । ସନ୍ଧ୍ୟାବେଳେ ଅରୁଅନ୍ନ ଗ୍ରହଣ ପରେ ଗ୍ରାମଦାଣ୍ଡରେ ଶେଷ ଅଭିନୟ ପ୍ରଦର୍ଶିତ ହୁଏ । ପଣା ସଂକ୍ରାନ୍ତି ଦିନ ମାଘସ୍ନାନ ସାରି ଠାକୁର କାମନା ଘରକୁ ଫେରିଯା'ନ୍ତି । ଦ୍ୱିପ୍ରହର ବେଳେ ପୂଜା ହୁଏ । ମୁଠିଆରେ ପଂକ୍ତି ଭୋଜନ ପରେ ଭୋକ୍ତାମାନେ ଘରକୁ ବାହୁଡ଼ି ଯାଆନ୍ତି ।

ଝାମୁଚଲା ପାଇଁ ଏକ ଖଳା ଖୋଳାଯାଏ । ଏହାର ଲମ୍ବ ସାତ, ଚଉଦ ବା ଏକୋଇଶ ହାତ ହୋଇଥାଏ । ସେଥିରେ କାଠ କୋଇଲାରେ ନିଆଁ ଧରାଯାଇ ଝୁଣା ବିଂଚାଯାଏ । ତା' ଉପରେ ପ୍ରଥମେ କାଳେସି ଓ ପରେ ମାନସିକ କରିଥିବା ଭୋକ୍ତାମାନେ ଚାଲନ୍ତି । ଖଳାର ଗୋଟିଏ ପାଖରେ କ୍ଷୀରକୁଣ୍ଡ ଓ ଅନ୍ୟପାଖରେ ଗୁଡ଼ପାଣି କୁଣ୍ଡ ରଖାଯାଏ । ନିଆଁରେ ଚାଲିବା ପୂର୍ବରୁ କ୍ଷୀରକୁଣ୍ଡ ଓ ପରେ ଗୁଡ଼ପାଣି କୁଣ୍ଡରେ ଗୋଡ଼ ବୁଡ଼ାଯାଏ । ମେରୁ ଦିନ ଦଣ୍ଡ ଛପା ହୁଏ ଓ କାମନା କୋଠିରେ ରଖିବା ପରେ ବାଦ୍ୟ ବନ୍ଦ ହୁଏ । ପଣା ସଂକ୍ରାନ୍ତିବାସି ଦିନ ବାସି ଖିଅର ହୋଇ ମଣିମାଙ୍କୁ ଶୁଦ୍ଧ ହୁଅନ୍ତି । ଘଟ ବିସର୍ଜନ କରିବା ପରେ ଶୁଦ୍ଧଘର ଭୋଜିହୁଏ । ସେଥିରେ ଭଗତାଙ୍କ ସହ ସାଧାରଣ ଲୋକେ ଯୋଗ ଦେଇ ଦଣ୍ଡପର୍ବ ସମାପନ କରନ୍ତି ।

'ଦଣ୍ଡଭଙ୍ଗା' ଉତ୍ସବ ଦେଖିବାକୁ ବିପୁଳ ଜନ ସମାଗମ ହୋଇଥାଏ । ଦଣ୍ଡନାଟର ଉଦ୍‌ଯାପନ ଦିବସ ପରେ ପରେ ହିଁ 'ଅକ୍ଷୟ ତୃତୀୟା' ପଡ଼ିଥାଏ । ଏହା କୃଷିକର୍ମର ପ୍ରାରମ୍ଭ ଦିବସ । ତେଣୁ ବିପୁଳ ଆନନ୍ଦରେ ଏହି ଉତ୍ସବ ପାଳିତ ହୋଇଥାଏ ।

ଜନଜୀବନରେ ପ୍ରଚଳିତ ଯୌତୁକ ପ୍ରଥା, ନାରୀ ନିର୍ଯ୍ୟାତନା, ନିଶା ସେବନ, ବୃକ୍ଷ ଛେଦନ ଭଳି କାର୍ଯ୍ୟରୁ ନିବୃତ୍ତ ହେବାକୁ ଦଣ୍ଡନାଟଦ୍ୱାରା ସଚେତନତା ସୃଷ୍ଟି କରାଯାଇଥାଏ । ନୀତି ଗର୍ଭିତ ବିଭିନ୍ନ ଭକ୍ତିସଂଗୀତ ଓ ପୌରାଣିକ ଆଖ୍ୟାନ ମାଧ୍ୟମରେ ଏକ ଆଦର୍ଶ ସମାଜ ଜୀବନ ଅତିବାହିତ କରିବାକୁ ଏଥିରୁ ଶିକ୍ଷା ମିଳେ । ଉପବାସ ଓ ପୂଜାର୍ଚ୍ଚନା ମାଧ୍ୟମରେ ଲୋକମାନଙ୍କ ମଧ୍ୟରେ ନିଷ୍ଠା ଓ ଭକ୍ତିଭାବ ସୃଷ୍ଟି କରିବାକୁ ଦଣ୍ଡନାଟରୁ ପ୍ରେରଣା ମିଳେ । ଗ୍ରାମ୍ୟ ଚଳଣୀ ଓ ସଂସ୍କୃତି ଏଥିରେ ପରିସ୍ଫୁଟ । ଦଣ୍ଡନାଟ ଏକ କଲ୍ୟାଣକାମୀ ଲୋକ ନାଟକ । ଆସ୍ତିକତା ଏହାର ପ୍ରାଣଧର୍ମ । ସମସ୍ୟା ଜର୍ଜରିତ ବ୍ୟକ୍ତି ଓ ସମାଜଜୀବନ ପାଇଁ ଏହା ଆଶା ଓ ସମ୍ଭାବନାର ସୂର ଝଙ୍କାର ସୃଷ୍ଟି କରେ ଉପାସନା ଓ ଅଭିନୟ ମାଧ୍ୟମରେ ।

ସମ୍ଭବତଃ ଦଣ୍ଡନାଟରେ ତାନ୍ତ୍ରିକ ପଦ୍ଧତିରେ ଶିବପୂଜା ଆରମ୍ଭ ହୋଇଛି ତାନ୍ତ୍ରିକ ବୌଦ୍ଧମାନଙ୍କର ପ୍ରବେଶ ଫଳରେ । ବିଷୁବ ସଂକ୍ରାନ୍ତିଦିନ ବୌଦ୍ଧଧର୍ମରେ ମହାମୁନି ମେଳା ଅନୁଷ୍ଠିତ ହୁଏ । ଓଡ଼ିଶାରେ ମଧ୍ୟ ଏହିଦିନ ଦଣ୍ଡନାଟର ଶେଷ ଉତ୍ସବ ପାଳନ କରାଯାଏ । ପଶ୍ଚିମବଂଗର 'ଗମ୍ଭୀରା' ଏବଂ ଓଡ଼ିଶାର 'ଚଡ଼କ ପୂଜା' ଏହି ସମୟରେ ଅନୁଷ୍ଠିତ ହୋଇଥାଏ । ଜୀବନର ବହୁବିଧ ସଫଳତା ଦୃଷ୍ଟିରୁ ଚୈତ୍ର ଓ ବୈଶାଖ ମାସରେ ଶିବପୂଜାର ଗୁରୁତ୍ୱ ସଂପର୍କରେ 'ସନତ କୁମାର ସଂହିତା' ମଧ୍ୟ ମତବ୍ୟକ୍ତ କରେ । ଦଣ୍ଡନାଟ ଉପାସନାରେ ଆତ୍ମା ଓ ଶରୀର ସାଧନାର ଦିଗଟି ଖୁବ୍ ଉଜ୍ଜ୍ୱଳମୟ ।

ଦଣ୍ଡନାଟରେ 'ଏକୀଭାବ' ପ୍ରତିଫଳିତ । ଏଥିରେ ଜାତି ଭେଦ ଓ ଧର୍ମଭେଦର ବିଚାର ନାହିଁ । ବୌଦ୍ଧଧର୍ମ ଦର୍ଶନରେ ଏହି ଏକୀଭାବ ଉପରେ ଗୁରୁତ୍ୱ ଦିଆଯାଇଛି । ଜଗନ୍ନାଥ ମନ୍ଦିରରେ ମହାପ୍ରସାଦ ସେବନ ପ୍ରଥାରେ ମଧ୍ୟ ଏକୀଭାବ ଲକ୍ଷଣୀୟ । ତେଣୁ ଦଣ୍ଡନାଟର ଏହି ଏକୀଭାବ ଜନସାଧାରଣଙ୍କ ମଧ୍ୟରେ ଆଧ୍ୟାତ୍ମିକ ଚେତନାର ବିକାଶ ଲାଗି ମାର୍ଗ ନିର୍ଦ୍ଦେଶ କରିଥାଏ । ବୌଦ୍ଧଧର୍ମରେ ନିର୍ବାଣର ପୂର୍ବ ସୋପାନକୁ 'ଏକୀଭାବ ରୂପେ ଗ୍ରହଣ କରାଯାଇଛି' । ଆବ୍ରାହ୍ମଣଚଣ୍ଡାଳ ସଭିଏଁ ଏକ । ସେହିଭଳି ଜଗନ୍ନାଥ ମନ୍ଦିରରେ ଆର୍ଯ୍ୟ ଓ ଅନାର୍ଯ୍ୟଙ୍କର ସମାନ ଅଧିକାର ରହିଛି ।

ଓଡ଼ିଶାର ଦଣ୍ଡନାଟରେ ଯେଉଁ ଭିନ୍ନ ଭିନ୍ନ ଉଦ୍ଭିଦ ଜାତୀୟ ଦଣ୍ଡଗୁଡ଼ିକୁ ପୂଜା କରାଯାଏ ତାହା ଦେବାଦେବୀଙ୍କ ପ୍ରତୀକ । ଅର୍ଥାତ ଦାରୁ ପୂଜା ଲୋକମାନଙ୍କ ଦ୍ୱାରା ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ଆସୁଛି । ଯାହା ଜଗନ୍ନାଥ ଧର୍ମ ଦର୍ଶନର ଏକ ଗୁରୁତ୍ୱପୂର୍ଣ୍ଣ ବିଧି । ଜଗନ୍ନାଥ ହେଉଛନ୍ତି ଦାରୁ ଦେବତା । ଯିଏ କି ଶବରମାନଙ୍କ ଦ୍ୱାରା ପୂଜା ପାଉଥିଲେ ଏବଂ ପରବର୍ତ୍ତୀ କାଳରେ ବିଦ୍ୟାପତି (ଆର୍ଯ୍ୟ)ଙ୍କ ଦ୍ୱାରା ଆନୀତ ହୋଇ ଶ୍ରୀକ୍ଷେତ୍ରରେ ବିରାଜିତ । ତେଣୁ ଜଗନ୍ନାଥ ଉପାସନା ଆର୍ଯ୍ୟ ଓ ଅନାର୍ଯ୍ୟ ସଭ୍ୟତା, ସଂସ୍କୃତି ଓ ଆଧ୍ୟାତ୍ମିକ ବିଶ୍ୱାସର ମିଳିତ ସହଯୋଗରେ ସମ୍ପାଦିତ ହୋଇଆସୁଛି । ପ୍ରାଣୀର ମଂଗଳ ପାଇଁ ଏକ ସନ୍ତୁଳିତ ପରିବେଶର ଆବଶ୍ୟକତା ଓ ଏଥିପାଇଁ ଦାରୁର ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ଜନଚେତନା ଜାଗ୍ରତ କରିବା ପାଇଁ ଦଣ୍ଡଯାତ୍ରାର ବଳିଷ୍ଠ ଭୂମିକାକୁ ଅସ୍ୱୀକାର କରାଯାଇ ନ ପାରେ । ଆଧ୍ୟାତ୍ମିକ ଚେତନାର ବିକାଶ ପାଇଁ ମୁନି, ଋଷି ଓ ସାଧକ ଗଣ ଘୋର ଅରଣ୍ୟକୁ ଉପଯୁକ୍ତ ସ୍ଥାନ ଭାବେ ବିଚାର କରୁଥିଲେ । ତେଣୁ ବୃକ୍ଷ ବା ପ୍ରକୃତିର ସହଯୋଗ ଜନସାଧାରଣଙ୍କ ପାଇଁ କେଉଁ ପରିମାଣରେ ଆବଶ୍ୟକ ତାହା 'ଦଣ୍ଡପୂଜା'ଦ୍ୱାରା ପ୍ରତିପାଦିତ ହୋଇଥାଏ । ଶାଳବୃକ୍ଷର ସୁଗନ୍ଧରସ ଝୁଣା ଦଣ୍ଡପୂଜାର ଏକ ଗୁରୁତ୍ୱପୂର୍ଣ୍ଣ ଉପାଦାନ । ଏହାର ବ୍ୟବହାର ଦ୍ୱାରା ଉକ୍ତ ଆଧ୍ୟାତ୍ମିକ ଚିନ୍ତାରେ ନିମଗ୍ନ ହୋଇଯାଏ । ଏହି ନିମଗ୍ନ ଭାବ ଚୈତନ୍ୟଙ୍କ ବୈଷ୍ଣବ ବିଚାରଧାରା ଅନ୍ତର୍ଭୁକ୍ତ ।

ଗ୍ରାମଦାଣ୍ଡରେ ଯେଉଁ ଦଣ୍ଡଯାତ୍ରା ଅନୁଷ୍ଠିତ ହୁଏ ତାହା ବୌଦ୍ଧଧର୍ମର ରଥଯାତ୍ରା ଓ ଜଗନ୍ନାଥଙ୍କ ରଥଯାତ୍ରା ଓ ଭୁବନେଶ୍ୱରର ଅଶୋକାଷ୍ଟମୀ ରଥଯାତ୍ରା ସହ ପ୍ରାୟତଃ ସାମ୍ୟ ରକ୍ଷା କରେ । ଅଶୋକାଷ୍ଟମୀ ରଥଯାତ୍ରା ସହ ସାମ୍ୟ ରକ୍ଷା କରେ । ସର୍ବସାଧାରଣଙ୍କ ଯାତ୍ରାପଥ ଓ ଦେବାଦେବୀଙ୍କ ଯାତ୍ରାପଥ ଓ ଦେବାଦେବୀଙ୍କ ଯାତ୍ରାପଥ ଏକ ଓ ଅଭିନ୍ନ । ଏହାର ତାତ୍ପର୍ଯ୍ୟ ହେଉଛି ଦେବତାଙ୍କୁ ଲୋକଙ୍କର ନିକଟବର୍ତ୍ତୀ କରାଇ ଲୋକମନରେ ଆଧ୍ୟାତ୍ମିକ ଭାବନା ଜାଗ୍ରତ କରାଇବା । ଏଇ ମାଟି ହିଁ ସ୍ୱର୍ଗ ବୋଲି ତ ଈଶ୍ୱର ମାନବର ଯାତ୍ରାପଥକୁ ଆଦରି ନେଇଛନ୍ତି । ଲୋକଚେତନାର ବିକାଶ ଏହାର ମୂଳଲକ୍ଷ୍ୟ । ସମାଜ ଜୀବନ ସହିତ ଆଧ୍ୟାତ୍ମିକ ସାଧନା ମଧ୍ୟ କରାଯାଇପାରେ । ସେଥିପାଇଁ ଜୀବନ ଜଞ୍ଜାଳରୁ ମୁକ୍ତି ନେଇ ନିକାଞ୍ଚନକୁ ପଳାଇଯିବାର ଆବଶ୍ୟକତା ନାହିଁ । ଭୌତିକ ଜୀବନକୁ ଆଧ୍ୟାତ୍ମିକ ଜୀବନରେ ପରିଣତ କରିବା ଏହାର ଅସଲ ଉଦ୍ଦେଶ୍ୟ । ଲୋକ ସମାଜକୁ ଆଧ୍ୟାତ୍ମିକ ଶିକ୍ଷା ପ୍ରଦାନ କରିବାର ସହଜ ଉପାୟଟି ହେଉଛି ଅଲୌକିକ ଶକ୍ତିସମ୍ପନ୍ନ ଦେବତାଙ୍କୁ

ଜନପଥକୁ ଓହ୍ଲାଇ ଆଣି ଲୋକଙ୍କ ସହିତ ସମ୍ମିଳିତ କରାଇବା ଓ ପରସ୍ପର ମଧ୍ୟରେ ଥିବା ଦୂରତ୍ୱର ଭାବନାକୁ ହ୍ରାସ କରାଇବା । ଆଧ୍ୟାତ୍ମିକତାର ଗଭୀର ତତ୍ତ୍ୱକୁ ସହଜ ଓ ସରଳ ଭାବେ ଲୋକମାନଙ୍କ ନିକଟରେ ରୂପାୟିତ କରେ ଦଣ୍ଡନାଟ । ନୃତ୍ୟ, ଗୀତ ଓ ଅଭିନୟ ମାଧ୍ୟମରେ ଏହି ଉତ୍ସବ ସମାଜର ସବୁ ଶ୍ରେଣୀର ଲୋକଙ୍କୁ ଶରୀର ସାଧନା ଓ ଆତ୍ମିକ ବିକାଶର ଶିକ୍ଷା ପ୍ରଦାନ କରେ ।

ଆରାଧ୍ୟ ଦେବତାଙ୍କୁ ପାତାଳି କରିବାର ଅଧିକାର ବିଧି ବହୁ ପ୍ରାଚୀନ । ଏହି ବିଧି ଦଣ୍ଡନାଟରେ ମଧ୍ୟ ପ୍ରଚଳିତ । ଅପହରଣ ଓ ଅପବିତ୍ରତାର ଭୟ ଏଥିରେ ନଥାଏ । ଇତିହାସରୁ ଜଣାଯାଏ ବୁଦ୍ଧଦେବଙ୍କ ଦଣ୍ଡକୁ ଅପହରଣରୁ ରକ୍ଷା କରିବା ପାଇଁ ଏକ ନଦୀ କୂଳରେ ପୋତି ଦିଆଯାଇଥିଲା । ସେହିଭଳି ମାଦଳା ପାଞ୍ଜିରୁ ଜଣାଯାଏ କଳା ପାହାଡ଼ ଦାଉରୁ ରକ୍ଷା କରିବା ପାଇଁ ଶ୍ରୀଜଗନ୍ନାଥଙ୍କୁ ଚିଲିକାର ନିଭୃତ ଇଲାକାରେ ପାତାଳି କରାଯାଇଥିଲା । ଏବେ ମଧ୍ୟ ଜଗନ୍ନାଥ ମନ୍ଦିରର ଉତ୍ତରପଟରେ ଅବସ୍ଥିତ 'କୋଇଲି ବୈକୁଣ୍ଠ'ରେ ନବ କଳେବର ସମୟରେ ବିଗ୍ରହମାନଙ୍କୁ ପାତାଳି କରାଯାଏ । ଦଣ୍ଡନାଟରେ ମଧ୍ୟ ଉତ୍ସବ ପରେ ଦେବାଦେବୀଙ୍କ ପ୍ରତୀକ 'ଦଣ୍ଡ'କୁ ପାତାଳି କରାଯାଏ ।

ହୁଏନ୍‌ସାଙ୍କ ବିବରଣୀରୁ ଜଣାଯାଏ ଅନ୍ଧକାର ରଜନୀରେ ବୌଦ୍ଧସ୍ତୂପ ଉପରେ ଉଜ୍ଜ୍ୱଳ ଦୀପ ଜଳିବାର ବିଧି ଥିଲା । ସେହିଭଳି ଏକାଦଶୀ ନିଶାର୍ଦ୍ଧରେ ଜଗନ୍ନାଥଙ୍କ ଶ୍ରୀମନ୍ଦିର ଶିଖର ଦେଶରେ ଦୀପ ସ୍ଥାପନା କରିବାର ପରମ୍ପରା ଏବେ ବି ପ୍ରଚଳିତ । ତାନ୍ତ୍ରିକ ପରମ୍ପରାରେ ନିଶାର୍ଦ୍ଧ ପୂଜାର୍ଚ୍ଚନା ବିଧି ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଦଣ୍ଡନାଟରେ ମଧ୍ୟ ନିଶାର୍ଦ୍ଧ ପୂଜାର୍ଚ୍ଚନା ବିଧିର ବଳିଷ୍ଠ ଭୂମିକା ରହିଛି ।

ଦଣ୍ଡନାଟ ପାଇଁ ବିଷୁବ ସଂକ୍ରାନ୍ତି ବା ପଣା ସଂକ୍ରାନ୍ତି ଦିନଟିର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । କୃଷିକର୍ମର ଏହା ଏକ ମଧ୍ୟବର୍ତ୍ତୀ ସମୟ । ଏକ ପକ୍ଷରେ କୃଷି କର୍ମର ସମାପନ ଘଟିଛି ଅନ୍ୟ ପକ୍ଷରେ ଆଗାମୀ କୃଷି କର୍ମର ଆହ୍ୱାନ । ଏହି ସନ୍ଧିକ୍ଷଣରେ ଏଭଳି ଉତ୍ସବ ପାଳନ କରାଯାଏ । ଏହି ସମୟରେ କର୍ମ ଜଞ୍ଜାଳ ନଥାଏ । ଇଷ୍ଟପୂଜା ପାଇଁ ଏକ ସ୍ଥିର ଚିତ୍ତର ଆବଶ୍ୟକତାକୁ ଦୃଷ୍ଟିରେ ରଖି ଏହି ସମୟକୁ ହୁଏତ ଲୋକମାନେ ପ୍ରକୃଷ୍ଟ ସମୟ ବୋଲି ବିବେଚନା କରିଛନ୍ତି । ପ୍ରାକୃତିକ ବିପର୍ଯ୍ୟୟରୁ ରକ୍ଷା ପାଇବା ଲାଗି ସର୍ବଶକ୍ତିମାନ ଈଶ୍ୱରଙ୍କୁ ଏଥିପାଇଁ ପୂଜାର୍ଚ୍ଚନା କରାଯାଏ । ଏହି

ଦୃଷ୍ଟିରୁ ସୀମିତ ଶକ୍ତି ସମ୍ପନ୍ନ ମଣିଷର ଭକ୍ତିବାଦୀ ବିଚାରଧାରା ସ୍ୱତଃ ଉଦ୍ରେକ ହେବା ଅସ୍ୱାଭାବିକ ନୁହେଁ । କାରଣ ସେକାଳର ସମାଜ ମୁଖ୍ୟତଃ କୃଷିଭିତ୍ତିକ ଥିଲା ।

ଦଣ୍ଡନାଟର ଅନେକ ଗୀତରେ ବ୍ରହ୍ମଜ୍ଞାନ, ରହସ୍ୟବାଦୀ ଚିନ୍ତା ଓ ପ୍ରତୀକ ଧର୍ମୀତାର ସ୍ଫୁରଣ ଘଟିଛି । ଏହାର ଗୋଟିଏ ଉଦାହରଣ ଏଠାରେ ଦିଆଯାଇପାରେ -

'ଲଉଡ଼ି ଭିତରେ କୁହୁଡ଼ି ଘୋଟିଛି
କୁହୁଡ଼ି ଭିତରେ ରାତି
ରାତିକି ଅରାତି ବାନ୍ଧି ନେଉଛି ଯେ
ଜୀବ ପରମ ଭାରତୀ ।।

ନିଷ୍କର୍ଷରେ ଏତିକି କୁହାଯାଇପାରେ ଦଣ୍ଡନାଟ ହେଉଛି ଏକ ଶିକ୍ଷାନୁଷ୍ଠାନ ଯିଏ ଭୌତିକ ଜୀବନକୁ ଦିବ୍ୟ ଜୀବନରେ ରୂପାୟିତ କରିବାର ଶିକ୍ଷା ପ୍ରଦାନ କରେ। ଏହାର ମୌଳିକ ଆଦର୍ଶ ହେଉଛି 'ବହୁଜନ ହିତାୟ ବହୁଜନ ସୁଖାୟ' ।

ବରିଷ୍ଠ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ନୀଳମଣି ମହାବିଦ୍ୟାଳୟ, ରୁପ୍ସା, ବାଲେଶ୍ୱର ।

